# ହରେକୃଷ୍ଣ ପଦ୍ୟାବଳୀ



ଲେଖକ :

ଠକୃଷ୍ଣ ହରିଚନ୍ଦନ ମହାପାତ୍ର



## ଜମିଦାର—ଶ୍ରୀ ହରେକୃଷ୍ଣ ହରିଚନ୍ଦନ ମହାପାତ୍ର

ଜନ୍ମ ତା ୨୯-୬-୧୯୦୦ ଶୁକ୍ରବାର ମୃତ୍ୟୁ ତା ୨୪-୧୨-୮୦ ପୌଷ କୃଷ୍ଣ ତୃତୀୟା ବୁଧବାର ରାତ୍ର ଘ ୯-୪୫

## ରାଣୀ—ଶ୍ରୀମତୀ ଲାବଣ୍ୟ କୁମାରୀ ଦେବୀ

ଜନ୍ମ ତା ୨୫ ୧୦ ୧୯୦୭ କୁମାରପୂର୍ଣ୍ଣିମା ମୃତ୍ୟୁ ତା ୧୧ ୯ ୧୯୬୮ ଭାଦ୍ର ଶୁକ୍ଳ ନବମୀ ସୋମବାର ସନ୍ଧ୍ୟା ଘ ୭-୦୫

ବିବାହ ତା ୭-୫-୧୯୨୦ ଅକ୍ଷୟତୃତୀୟା

କବିଙ୍କ ସ୍ୱ ହସ୍ତାଙ୍କିତ ଅକ୍ଷର

ଓଁ

( ଶ୍ରୀ ଦୁର୍ଗାୟୈ ନମଃ )

ଓଂ ସର୍ବ ମଙ୍ଗଳା ମଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ ।
ଶରଣ୍ୟେ ତ୍ର୍ୟମ୍ବିକେ ଗୌରୀ । ନାରାୟଣୀ ନମୋସ୍ତୁତେ ।୧।

— ୦ —

ଶ୍ରୀ ବ୍ରଜସୁନ୍ଦର ହରିଚନ୍ଦନ ମହାପାତ୍ର ଜମିଦାର
ମୁ। ଗଡ଼ ମଣ୍ଡପଡ଼ା ପୋଷ୍ଟ: ପାଟିଆ ଜି। ପୁରୀ
(Vie) New Capital, B.B.S.



ଜନ୍ମ କୁଣ୍ଡଳୀ

ଜନ୍ମ ତା ୨୯.୬-୧୯୦୦ ଶ୍ରୀଗୁଣ୍ଡିଚା ଶୁକ୍ରବାର

ସ୍ନ ୧୩୦୭ ସାଲ ମିଥୁନ ଦ୧୬ନ



ସର୍ବସ୍ୱତ୍ୱାଧିକାରୀ

**ଶ୍ରୀ ମହେନ୍ଦ୍ର ନାରାୟଣ (ଦେଓ)**
**ହରିଚନ୍ଦନ ମହାପାତ୍ର**

ଗଡ଼ମଲ୍ଲପଡ଼ା

# ॥ ସୂଚୀପତ୍ର ॥

| ନମ୍ବର | ବିଷୟ | ପୃଷ୍ଠା |
|---|---|---|
| ୨୨ ॥ | ଶ୍ରୀ ଗଃ ପାରୁ | ॥ ୫୭ ॥ |
| ୨୩ ॥ | ବରଜରାଜ ତନୁଜ | ॥ ୫୯ ॥ |
| ୨୪ ॥ | ନୀଳାଚଳେ ଭଜନତମେଳେ | ॥ ୬୧ ॥ |
| ୨୫ ॥ | ଓଁ ନମଃ ଜୟଦୁର୍ଗାୟୀ | ॥ ୬୨ ॥ |
| ୨୬ ॥ | ଶ୍ରୀ ଗଣେଶାୟ ନମଃ | ॥ ୬୩ ॥ |
| ୨୭ ॥ | ପଞ୍ଚଦେବତା ବନ୍ଦନା | ॥ ୬୫ ॥ |
| ୨୮ ॥ | ଓଁ କୁରୁକ୍ଷେତ୍ର ମିଳନ ଓ କୁରୁକ୍ଷେତ୍ର ରାଧାଙ୍କ ସହ ରସୋଲ୍ଲାସ ପ୍ରକରଣ | ॥ ୬୬ ॥ |
| ୨୯ ॥ | ଶ୍ରୀ ହରି | ॥ ୭୯ ॥ |
| ୩୦ ॥ | ଶ୍ରୀକୃଷ୍ଣାୟ ନମଃ | ॥ ୮୦ ॥ |
| ୩୧ ॥ | ଶ୍ରୀ ସରସ୍ୱତୀ ଦେବୀ ବନ୍ଦନା | ॥ ୮୨ ॥ |
| ୩୨ ॥ | ଶ୍ରୀ ନାରାୟଣ ବନ୍ଦନା | ॥ ୮୩ ॥ |
| ୩୩ ॥ | ଜୟଦୁର୍ଗା ବନ୍ଦନା | ॥ ୮୪ ॥ |
| ୩୪ ॥ | ଶ୍ରୀକୃଷ୍ଣ ସ୍ତୋତ୍ର | ॥ ୮୫ ॥ |
| ୩୫ ॥ | ନୀଳାଚଳ ବର୍ଣ୍ଣନ | ॥ ୮୭ ॥ |
| | [illegible] | ॥ ୮୮ ॥ |

ନିମ୍ନୋକ୍ତ ଗୀତ, ଉତ୍କଳର ମହତାବ, ଉତ୍କଳର ସାମନ୍ତରାୟ ଓ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ରଙ୍କ ଅଭିମତ ପୁସ୍ତକ ମୁଦ୍ରଣ ପରେ ମିଳିବାରୁ ଏଥିରେ ସନ୍ନିବିଷ୍ଟ ହେଲା ।

| | | |
|---|---|---|
| ୩୭ ॥ | ସୁନ୍ଦରୀ ଚଉତିଶା କମଳ ନୟନ ରଘୁମଣି | ॥ ୮୯ ॥ |
| ୩୮ । | କହ୍ନାଇ ଧନୀ ରାଇ, ଆଉ ବଞ୍ଚିବେ ନାହିଁ | ॥ ୯୪ ॥ |
| ୩୯ ॥ | କମଳାଧର ପଦେ ମନ ତୁ ରଖି | ॥ ୯୫ ॥ |
| ୪୦ ॥ | ରମଣୀମଣି ମୋ ଗଳା ରତନ ହାର | ॥ ୧୦୦ ॥ |
| ୪୧ ॥ | ନମସ୍ତେ କମଳା ଗଳା | ॥ ୧୦୧ ॥ |
| ୪୨ ॥ | ପାପଧନ କରନା | ॥ ୧୦୧ ॥ |
| ୪୩ ॥ | ଶବ୍ଦ ଅର୍ଥ | ॥ ୧୦୨ ॥ |
| ୪୪ ॥ | ଶୁଦ୍ଧିପତ୍ର | ॥ ୧୦୩ ॥ |

# ଉପହାର

ଶ୍ରୀ/ଶ୍ରୀମତୀ                                                                                  ଙ୍କୁ

ଭକ୍ତି ଶ୍ରଦ୍ଧାର ଚିହ୍ନ ସ୍ୱରୂପ 'ହରେକୃଷ୍ଣ ପଦ୍ୟାବଳୀ'ଟି ଅର୍ପଣ କଲି ।

ପ୍ରକାଶକ

ଶ୍ରୀ ମହେନ୍ଦ୍ର ନାରାୟଣ (ଦେଓ)

ହରିଚନ୍ଦନ ମହାପାତ୍ର

ତା

# ଉତ୍ସର୍ଗ ପତ୍ର

ଶ୍ରୀଯୁକ୍ତ ମହାବୀର ସିଂହ ଦେଓ । ପୁରୁଣା ରାଜବାଟୀ ବଲାଙ୍ଗିର

ପୂଜ୍ୟମାନ୍ୟ ମାମୁଁ !

ବାପା ତାଙ୍କର ଅନାବିଳ ସ୍ନେହ, ଶ୍ରଦ୍ଧା ଅକାତର ଭାବେ ଆପଣଙ୍କୁ ଅଜାଡ଼ି ଦେଇଥିଲେ । ପ୍ରତି ସପ୍ତାହରେ ଆପଣଙ୍କୁ ପତ୍ର ନଦେଲେ ବା ଆପଣଙ୍କଠାରୁ ନପାଇଲେ ପ୍ରାଣ ତାଙ୍କର ବଳପି ଉଠୁଥିଲା । ପ୍ରତିଦାନରେ ଆପଣ ତାଙ୍କୁ ହୃଦୟର ଅସୀମ ଭକ୍ତି, ଶ୍ରଦ୍ଧା ଅର୍ପଣ କରିଥିଲେ । ତାଙ୍କର ଅଳ୍ପଅଳ ସ୍ନେହର ପ୍ରତୀକ 'ହରେକୃଷ୍ଣ ପଦ୍ୟାବଳୀ''ଟି ଆପଣଙ୍କୁ ଅର୍ପଣ କରି ନିଜକୁ କୃତାର୍ଥ ମନେ କରୁଛି ।

॥ ଇତି ॥

ଚରଣ ସେବକ

**ମହେନ୍ଦ୍ର**

# ଅଭିମତ

ଭୁବନେଶ୍ୱର ନିକଟବର୍ତ୍ତୀ ଗଡ଼ମଳିପଡ଼ା ଖୋର୍ଦ୍ଧା ରାଜାଙ୍କ ଅଧୀନସ୍ଥ ଏକ ଗଡ଼ ଥିଲା । ଏହାର ଜମିଦାରମାନଙ୍କ ବଂଶ ପ୍ରାଚୀନ । ବ୍ରିଟିଶ ଶାସନରେ ପ୍ରବର୍ତ୍ତିତ ଆଇନ ଏବଂ ପରେ ଜମିଦାରୀ ଉଚ୍ଛେଦ ପରେ ସବୁ ଜମିଦାରଙ୍କ ଯେପରି ଅବସ୍ଥା ଗଡ଼ମଳିପଡ଼ା ଜମିଦାରଙ୍କ ମଧ୍ୟ ସେହି ଅବସ୍ଥା । ତଥାପି ପୂର୍ବତନ ସମ୍ଭ୍ରାନ୍ତ ପରିବାରରେ ଯେପରି ସାହିତ୍ୟ ସଙ୍ଗୀତାଦି ଚାରୁକଳା ବିକାଶ ଦିଗରେ ଉଦ୍ୟମ କରା ହେଉଥିଲା ସେହିପରି ଗଡ଼ ମଳିପଡ଼ା ଜମିଦାର ପରିବାରରେ ହେଉଥିଲା । ଏହାର ଶେଷ ନିଦର୍ଶନ ଶ୍ରୀ ହରେକୃଷ୍ଣ ହରିଚନ୍ଦନ ମହାପାତ୍ରଙ୍କ କବିତାଗୁଚ୍ଛ "ହରେକୃଷ୍ଣ ପଦ୍ୟାବଳୀ"ନାମରେ ପ୍ରକାଶିତ ପୁସ୍ତକ । ଲେଖକ ଆନୁଷ୍ଠାନିକଭାବେ ଉଚ୍ଚ ଶିକ୍ଷିତ ନ ଥିଲେ ମଧ୍ୟ ଅନାନୁଷ୍ଠାନିକ ଶିକ୍ଷା ଓ ସାଧନା ଫଳରେ ସେ ଯେ ଜଣେ ପ୍ରଖ୍ୟାତ ବିଦ୍ୱାନ ଏବଂ ବହୁ ବିଷୟରେ ତାଙ୍କର ପାଣ୍ଡିତ୍ୟ ଥିଲା ଏଥିରେ ସନ୍ଦେହ ନାହିଁ । "ପଦ୍ୟାବଳୀ"ରେ ସେ ବିଭିନ୍ନ ବିଷୟରେ ସଙ୍ଗୀତାକାରରେ ପ୍ରାଚୀନ ଭଙ୍ଗୀଯୁକ୍ତ ପଦ୍ଧତିରେ କବିତାମାନ ଲେଖିଛନ୍ତି । କବିତାଗୁଡ଼ିକ ସୁପାଠ୍ୟ । ଭାଷା ଓ ଛନ୍ଦ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଓ ଶ୍ରୁତି ମଧୁର । ପୁସ୍ତକର ମୁଖବନ୍ଧରେ ଜମିଦାର ପରିବାରର ଇତିହାସ ଦିଆ ହୋଇ ପୁସ୍ତକଟିକୁ ଆହୁରି ମୂଲ୍ୟବାନ କରିଛି । ଓଡ଼ିଶାରେ ସାହିତ୍ୟ ଯେ ଏକ ସମୟରେ ସାଧାରଣ ସାଧନାରେ ପରିଣତ ହୋଇଥିଲା "ହରେକୃଷ୍ଣ ପଦ୍ୟାବଳୀ" ତାହାର ଜ୍ୱଳନ୍ତ ନିଦର୍ଶନ । ସ୍ୱର୍ଗତ ହରେକୃଷ୍ଣ ହରିଚନ୍ଦନ ମହାପାତ୍ରଙ୍କ ସୁପୁତ୍ର ଶ୍ରୀ ମହେନ୍ଦ୍ର ନାରାୟଣ(ଦେଓ) ହରିଚନ୍ଦନ ମହାପାତ୍ର ନିଜ ପିତାଙ୍କ ରଚନାବଳି ପ୍ରକାଶ କରି କେବଳ ପିତୃଭକ୍ତିର ପରିଚୟ ଦେଇ ନାହାଁନ୍ତି ସେ ଓଡ଼ିଆ ସାହିତ୍ୟକୁ ଏକ ମୂଲ୍ୟ ଅବଦାନ ମଧ୍ୟ ଦେଇଛନ୍ତି ।

**ଡକ୍ଟର ହରେକୃଷ୍ଣ ମହତାବ**



# ଅଭିମତ

ଗଡ଼ମଲ୍ଲପଡ଼ା ଜମିଦାର ସାମନ୍ତ ଶ୍ରୀ ହରେକୃଷ୍ଣ ହରିଚନ୍ଦନ ମହାପାତ୍ରଙ୍କ ରଚିତ 'ହରେକୃଷ୍ଣ ପଦ୍ୟାବଳୀ' ପୁସ୍ତକ ଅଧ୍ୟୟନ କରି ମୁଁ ଅତିଶୟ ଆନନ୍ଦିତ ହେଲି । କାବ୍ୟଯୁଗ-ସାହିତ୍ୟର ଅମଳିନ କାବ୍ୟ-ସମ୍ପଦ ଏ ଦେଶର ଜନଚିତ୍ତକୁ ଯୁଗ ଯୁଗ ଧରି କିପରି ରସ-ସିକ୍ତ କରି ରଖିବାରେ ସମର୍ଥ ହୋଇଥିଲା, 'ହରେକୃଷ୍ଣ ପଦ୍ୟାବଳୀ' ରଚନାର ପଶ୍ଚାତ୍‌ରେ ଥିବା ସେହି ନିଗୂଢ଼ ସତ୍ୟ ଅନୁଭବ ନ କରି ରହିହୁଏ ନାହିଁ । ରାଜାଶ୍ରୟ ପରିବେଶ-ପରିବର୍ଦ୍ଧିତ ସାମନ୍ତବାଦୀ କବି-ଚିତ୍ତ ବାଗ୍‌ଦେବୀଙ୍କ ଅପାର କରୁଣାରୁ ବିମଳ କାବ୍ୟ ସୌନ୍ଦର୍ଯ୍ୟ ଓ ଭକ୍ତି-ରସର ସମନ୍ୱୟରେ ଦିନେ ଯେଉଁ ବିଶାଳ ସାହିତ୍ୟ-ସୌଧ ନିର୍ମାଣ କରିଥିଲା, ବର୍ତ୍ତମାନ ଯୁଗରେ 'ହରେକୃଷ୍ଣ ପଦ୍ୟାବଳୀ' ପରି କୃତି ସେହି ସୌନ୍ଦର୍ଯ୍ୟ-ସୌଧର ଶେଷ ଝଲକ ବୋଲି ଅନୁଭୂତ ହୁଏ ।

ଆଲୋଚ୍ୟ ପୁସ୍ତକରେ କୁମାର-ସମ୍ଭବ ଓ ଶ୍ରୀମଦ୍‌ଭାଗବତାନ୍ତର୍ଗତ କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣ-ଗୋପୀଙ୍କ ମିଳନର ଚିତ୍ରକୁ ଅବଲମ୍ବନ କରି ବିଭିନ୍ନ ଛନ୍ଦବିଶିଷ୍ଟ ଦୁଇଟି କ୍ଷୁଦ୍ରାବୟବର କାବ୍ୟ ସହିତ ଶ୍ରୀଦୁର୍ଗା, ଶ୍ରୀରାଧାକୃଷ୍ଣ, ଶ୍ରୀକୃଷ୍ଣ, ଶ୍ରୀନାରାୟଣ, ଶ୍ରୀଶିବ, ଶ୍ରୀଜଗନ୍ନାଥ, ଶ୍ରୀଗଣେଶ, ଶ୍ରୀନୀଳାଚଳ, ଶ୍ରୀଲିଙ୍ଗରାଜ ପ୍ରଭୃତି ଦେବଦେବୀଙ୍କ ଅବଲମ୍ବନରେ ବିଭିନ୍ନ ସ୍ତୁତି, ଜଣାଣ ବା ବନ୍ଦନା ସ୍ଥାନ ପାଇ ଅଛନ୍ତି । ଏଥିରେ କବିଙ୍କ ଭକ୍ତିମତ୍ତାର ବୈଶିଷ୍ଟ୍ୟ ସୁପରିସ୍ଫୁଟ । ସର୍ବଧର୍ମ-ସମନ୍ୱୟର ବାର୍ତ୍ତା ପ୍ରଚାରକ ଶ୍ରୀପୁରୁଷୋତ୍ତମ-ଦେଶରେ ସବୁ ମତବାଦର ଦେବଦେବୀଙ୍କ ପ୍ରତି ସମାନ ସମ୍ମାନ ପ୍ରଦର୍ଶନ ଏକାନ୍ତ ସ୍ୱାଭାବିକ । ଭକ୍ତି-ଭାବ-ଗର୍ଭିତ ଏହି ସ୍ତୁତିଗୁଡ଼ିକର ଗଠନ-ଶିଳ୍ପରେ କାବ୍ୟ-ଯୁଗର ସାହିତ୍ୟାଦର୍ଶ ସମ୍ପୂର୍ଣ୍ଣ ପ୍ରତିଫଳିତ । ବିଭିନ୍ନ ରାଗରାଗିଣୀ, ବିବିଧ ବୃତ୍ତ ଓ ଅକ୍ଷର-ସ୍ଥାପନା ନିୟମ ସହିତ ବହୁବିଧ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରରେ ସୁଶୋଭିତ ଆଲୋଚ୍ୟ 'ପଦ୍ୟାବଳୀ' ଗ୍ରନ୍ଥ, ଆଧୁନିକ ଯୁଗରେ ମଧ୍ୟ, ପ୍ରାଚୀନ କାବ୍ୟାମୋଦୀ ରସିକ ଭକ୍ତ ଓ ପାଠକମାନଙ୍କୁ ବହୁ ପରିମାଣରେ ଆନନ୍ଦ ପ୍ରଦାନ କରିବାରେ ସମର୍ଥ ହେବ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ ।

ଏଥିରେ ପ୍ରଥମେ ସଂଯୋଜିତ । ଗଡ଼ମଲ୍ଲପଡ଼ାର ଇତିହାସ-ଆଲୋଚନା ବହୁ ଦୃଷ୍ଟିରୁ ଅତ୍ୟନ୍ତ ଉପାଦେୟ । ଉତ୍କଳୀୟ ଅତୀତ ଶୌର୍ଯ୍ୟ-ବୀର୍ଯ୍ୟର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରୁଥିବା ଅଜସ୍ର ଗଡ଼ ଓ ରାଜା-ଜମିଦାର ବଂଶର ଗୌରବମୟ

ଇତିହାସ ଆଜି ବିସ୍ମୃତି ଗର୍ଭରେ ଲୁପ୍ତ ହେବାକୁ ବସିଅଛି । ତାଙ୍କ ସୁଯୋଗ୍ୟ ଦାୟାଦ ଶ୍ରୀ ମହେନ୍ଦ୍ର ନାରାୟଣ ହରିଚନ୍ଦନ ଝଜଗଡ଼ ମାଳପଡ଼ାର ଇତିହାସ ବହୁ ଶ୍ରମ ସ୍ୱୀକାର ପୂର୍ବକ ପ୍ରସ୍ତୁତ କରି ଜନସାଧାରଣଙ୍କ ସମ୍ମୁଖରେ ଯେପରି ଉପସ୍ଥାପନା କରିଅଛନ୍ତି, ତାହା ଅନ୍ୟ ଆଲୋଚକମାନଙ୍କ ପକ୍ଷରେ ଏକ ଉଜ୍ଜ୍ୱଳ ଆଲୋକ ବର୍ତ୍ତିକା ସ୍ୱରୂପ ନିଶ୍ଚିତଭାବେ ବିବେଚିତ ହେବ ।

**ଡକ୍ଟର ଶ୍ରୀଯୁକ୍ତ ନଟବର ସାମନ୍ତରାୟ,**
ପି. ଏଚ୍. ଡି., ଭୂତପୂର୍ବ ଅଧ୍ୟାପକ, ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀଭବନ, ସାମନ୍ତରାପୁର ଭୁବନେଶ୍ୱର,

# ଅଭିମତ

ମଲପଡ଼ାଗଡ଼ ଜମିଦାର ସ୍ୱର୍ଗତ ଶ୍ରୀ ହରେକୃଷ୍ଣ ହରିଚନ୍ଦନ ମହାପାତ୍ରଙ୍କ ରଚିତ 'ହରେକୃଷ୍ଣ ପଦ୍ୟାବଳୀ' ସୁଯୋଗ୍ୟ ଦାୟାଦ ଶ୍ରୀ ମହେନ୍ଦ୍ର ନାରାୟଣ ହରିଚନ୍ଦନ ମହାପାତ୍ରଙ୍କ ଦ୍ୱାରା ଯଥା ସମୟରେ ପ୍ରକାଶିତ ହେବା ଅତି ଆନନ୍ଦର ବିଷୟ ।

କବିଙ୍କର ସୃଷ୍ଟାଙ୍କନ ତାଙ୍କର ରଚିତ କୁମାର ସମ୍ଭବ କାବ୍ୟରେ ସୁସ୍ପଷ୍ଟ । କାଳିଦାସଙ୍କର 'କୁମାର ସମ୍ଭବ' କାବ୍ୟର ଅନୁକରଣରେ ରଚିତ ହେଲେହେଁ ବିଷୟବସ୍ତୁ ନିର୍ବାଚନ ଓ ବର୍ଣ୍ଣନାରେ କବିଙ୍କର ମୌଳିକତା ପରିଲକ୍ଷିତ ହୁଏ । କାବ୍ୟଟି ଅଠଟି ଛାନ୍ଦରେ ସଂପୂର୍ଣ୍ଣ ହୋଇଛି ଓ ପ୍ରତ୍ୟେକ ଛାନ୍ଦ କାବ୍ୟ ନିୟମାନୁଯାୟୀ ଅତି ଦୀର୍ଘ ବା ହ୍ରାସ ହୋଇନାହିଁ । ଓଡ଼ିଆ ସାହିତ୍ୟରେ ରୀତିଯୁଗର ଶ୍ରେଷ୍ଠ କବି ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର ଆଦିଙ୍କ ସଦୃଶ କବି ଅତି ନିପୁଣତା ସହକାରେ ଆଲଙ୍କାରିକ ପଦ ରଚନା କରିପାରିଛନ୍ତି ;

ଯଥା :—ଭବ ଭବଡାମ ନାଶନେ ଶର୍ବ   ଭବନବାସୀ
ଶିବ ଶିବରାଜୀ ଶିରୁକେ ତୃଟୁ   ଶମନ ଫାଶୀ
କୁମାର ସମ୍ଭବ (୧-୨)

ଅନୁପ୍ରାସ :—ହିମକର ଖଣ୍ଡ ଶିଖଣ୍ଡ ମଣ୍ଡନ   ଦଣ୍ଡଧର ଦଣ୍ଡଦାତା
ଗାଣ୍ଡୁ ଗଣ୍ଡସ୍ଥଳ ବଳୀ ଆଖଣ୍ଡଳ   ବିପତ୍ତି ଖଣ୍ଡନକର୍ତ୍ତା
କୁମାର ସମ୍ଭବ (୪।୧)

ପ୍ରାଚୀନ ଓଡ଼ିଶାର ସମ୍ଭ୍ରାନ୍ତ କୁଳୀନ ପରିବାର ମାନଙ୍କରେ କାବ୍ୟକଳା ଚର୍ଚ୍ଚା ଏକ ପ୍ରଚଳିତ ବିଧି ଥିଲା । ହରିଚନ୍ଦନଙ୍କର ପରିବାର ଏଥିରୁ ବ୍ୟତିକ୍ରମ ହୋଇନାହିଁ ।

କୁମାର ସମ୍ଭବ କାବ୍ୟ ବ୍ୟତୀତ କବିଙ୍କର ଅନ୍ୟ ଏକ ପଞ୍ଚଛାନ୍ଦ ବିଶିଷ୍ଟ କ୍ଷୁଦ୍ର କାବ୍ୟ 'କୁରୁକ୍ଷେତ୍ର ମିଳନ' ଓ ରାଧାଦିଙ୍କ ସହ ରାସୋଲ୍ଲାସ ପ୍ରକରଣ, ମୌଳିକ କୃତି ସ୍ୱରୂପ ଜଗନ୍ନାଥ ବନ୍ଦନା, ପଞ୍ଚଦେବତା ଓ ଅନ୍ୟାନ୍ୟ ଦେବଦେବୀଙ୍କର ବନ୍ଦନା ଉଲ୍ଲେଖଯୋଗ୍ୟ । ଏହି ବନ୍ଦନା ଗୁଡ଼ିକରେ ପ୍ରଦତ୍ତ ଉପମା ଉପମେୟ ଆଦିରୁ

କବିଙ୍କର ପୁରାଣ ଓ ଜ୍ୟୋତିଷ ଶାସ୍ତ୍ରାଦି ତଥା ଅନ୍ୟାନ୍ୟ ଶ୍ରୁତି ଗ୍ରନ୍ଥମାନଙ୍କରେ ଯେ ଗଭୀର ପ୍ରବେଶ ଥିଲା ଏହା ସହଜରେ ଅନୁମେୟ । ରାଧାନାଥଙ୍କ ଆଧୁନିକ ଯୁଗ ପରେ ପୁଣି ରୀତିଯୁଗକୁ ଫେରିଯିବାର ଏହା ଗୋଟିଏ ନିଦର୍ଶନ । ସମ୍ଭବତଃ ସେଇ ଭୟରେ ଲେଖକ ଜୀବିତାବସ୍ଥାରେ ଏହାର ମୁଦ୍ରଣ କରାଇ ପାରିନାହାନ୍ତି । ଏ ପୁସ୍ତକରେ ସନ୍ନିବେଶ କବିତାଗୁଡ଼ିକ ରୀତିଯୁଗୀୟ ଭକ୍ତିଭାବରେ ପୂର୍ଣ୍ଣ । ଠାଣି ମଧ୍ୟ ତଦ୍ରୂପ । କେବଳ କଳା ପାଇଁ କଳା ସୃଷ୍ଟି ନ କରି କବି ଏକ ସଙ୍ଗୀତମୟ କଳା ସର୍ଜନା କରିଯାଇ ଅଛନ୍ତି । ଭାବ ଚିନ୍ତା ମଧ୍ୟରେ ଆଧୁନିକ ଜୀବନରେ ଯେଉଁ ସଙ୍ଘର୍ଷ ଚାଲିଛି ସେଥିପ୍ରତି ଦୃଷ୍ଟି ଦେଲେ ଏଇ ଭାବ ଉଦ୍ଦୀପକ ଗ୍ରନ୍ଥର ସ୍ଥାନ ଯେଉଁଠାରେ ନିର୍ଦ୍ଧାରିତ ହେଉ ପଛେ ଏଇ ଭକ୍ତିଯୁଗୀୟ ଆଧୁନିକ କ୍ଷୁଦ୍ର ସ୍ଥାନ ଯେ ନିର୍ଦ୍ଦିଷ୍ଟ ଏଥିରେ ସନ୍ଦେହ ନାହିଁ ।

ଏହି ପୁସ୍ତକରେ ଗଡ଼ମଲପତିର ଇତିହାସ ପ୍ରକାଶକ ତଦୀୟ ପୁତ୍ର ଶ୍ରୀ ମହେନ୍ଦ୍ର ନାରାୟଣ ଦେଓ ସନ୍ନିବେଶିତ କରି ଗ୍ରନ୍ଥଟିର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି । ଦୀର୍ଘ ତିନିଶହ ବର୍ଷର ଓଡ଼ିଶା ଇତିହାସ ସହ ଏହି ଭୂଖଣ୍ଡ କିପରି ସଂଶ୍ଳିଷ୍ଟ ଏହା ପାଠକଲେ ତାହା ଜଣାଯାଏ । ପିତାଙ୍କର ତିରୋଭାବରେ ପୁତ୍ର ମହେନ୍ଦ୍ର ପିତୃଋଣ ପରିଶୋଧ କରୁଥିଲା ପରି ମନେହୁଏ ।

॥ ଇତି ॥

**ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର,**

ସମ୍ପାଦକ ଡଗର

କାନ୍ତ କୁଟୀର, ଖାରବେଳ ନଗର, କ୍ୱାର୍ଟର ଡ଼/୪

## ମା ଦୁର୍ଗା

# ମୁଖବନ୍ଧ

ପିତା ଧର୍ମ, ପିତା ସ୍ୱର୍ଗ, ପିତାହିଁ ପରମ ତପ ।
ପିତରି ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବ ଦେବତା ॥

ବାପା !

ଏ ମହାନ ବାଣୀ ଆପଣ ଅନେକଥର କଥାଛଳରେ ମୋତେ ଶିଖାଇ ଥିଲେ, ଆପଣଙ୍କ ସ୍ନେହ ପାଳିତ "ହରେକୃଷ୍ଣ ପଦ୍ୟାବଳୀ"ଟି ଆପଣଙ୍କ ଜୀବଦଶାରେ ପ୍ରକାଶ କରି ନପାରି ଆପଣଙ୍କ ଅଭିଳାଷ ପୂରଣ କରି ପାରି ନଥିବାରୁ ନିଜକୁ ଧିକ୍କାର କରିବା ସଙ୍ଗେ ସଙ୍ଗେ ଅନୁତପ୍ତ ହୋଇ ଆପଣଙ୍କୁ କ୍ଷମା ମାଗୁଛି । ସେପୁରରେ ଥାଇ ନିଜର କ୍ଷମାଗୁଣେ ଏ ଅଧମ ସନ୍ତାନକୁ କ୍ଷମା ଦେବେ ବୋଲି ଆଶା ।

ପୂଜ୍ୟ ସ୍ୱର୍ଗୀୟ ପିତୃଦେବ ତା ୨୯-୭-୧୯୦୦ ମସିହା ଶୁକ୍ରବାର ପୁଣ୍ୟ ଶ୍ରୀଗୁଣ୍ଡିଚା ଦିନ ପିତା ମାତାଙ୍କ ତୃତୀୟ ଏକମାତ୍ର ପୁତ୍ର ସନ୍ତାନ ଭାବେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ମଦନ ମୋହନଙ୍କ ସଙ୍ଗୀତ ପ୍ରିୟତା, ବିଳାସପୂର୍ଣ୍ଣ ଜୀବନ ଯାପନ, ଅନିୟମିତ ଖର୍ଚ୍ଚ ଓ ଭାଇମାନଙ୍କ ପାଇଁ ଋଣ ଗ୍ରସ୍ତ ହୋଇ ନାନା ମାଲିମୋକଦ୍ଦମା ହେତୁ ଦୁଃଶ୍ଚିନ୍ତାରେ ଜୀବନର ଶେଷ ୧୪ ବର୍ଷ ଏକାଙ୍ଗ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇଥିଲେ । ଏ ଦୁଃସ୍ଥ ପରିସ୍ଥିତିରେ ନିଜ ମା ଓ ମାମୁଁ ବାଞ୍ଛାନିଧି ମହାନ୍ତିଙ୍କ ଯତ୍ନରେ କଟକ କଲିଜିଏଟ୍ ଓ ମିଶନ ସ୍କୁଲରେ ଡବଲ ପ୍ରମୋଶନ ପାଇ ଅଷ୍ଟମ ଶ୍ରେଣୀରୁ ଦଶମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବା ସମୟରେ ୧୯୧୮ ମସିହା ମାଘ କୃଷ୍ଣ ନବମୀ ଦିନ ପିତାଙ୍କର ମୃତ୍ୟୁ ହେବାରୁ ପୋଥିରେ ଡୋର ଦେଇ କୌଳିକ ପ୍ରଥାନୁଯାୟୀ ଗଦିନସିନ ହୋଇ ଜମିଦାର ହେଲେ । ଅନେକ ମାଲିମୋକଦ୍ଦମା ଅର୍ଥାଭାବ ହେତୁ ବାଲ୍ୟ ଜୀବନ ଦୁଃଖପୂର୍ଣ୍ଣ ହୋଇଥିଲା । ବିନା କଷ୍ଟେ କୃଷ୍ଣପ୍ରାପ୍ତି ଅସମ୍ଭବ, ଆପ୍ତବାକ୍ୟ ତାଙ୍କଠାରେ ପ୍ରତି-ଫଳିତ ହୋଇଥିଲା । ସମସ୍ତ ମାଲିମୋକଦ୍ଦମାରେ ଯଶସ୍ୱୀ ହୋଇ ନିଜର ଅଧ୍ୟବସାୟ ଓ ସାହିତ୍ୟାନୁରାଗ ହେତୁ ଶାସ୍ତ୍ରରେ ଗଭୀର ମନୋନିବେଶ ହେତୁ, ମଧୁ ବର୍ଣ୍ଣବୋଧ ଠାରୁ କାଳିଦାସ ମାଘ; ଭାରବୀ, ଶ୍ରୀହର୍ଷ ଆଦିଙ୍କ ଶ୍ଳୋକ,

ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ, ବଳଦେବଙ୍କ ଛାନ୍ଦ ଓ ଗୀତ ଅନେକ ଜ୍ୟୋତିଷ ଶ୍ଳୋକ ତାଙ୍କର ମୁଖସ୍ଥ ଥିଲା । ନ୍ୟାୟପଥ, ବ୍ୟବସ୍ଥାଶାସ୍ତ୍ର ଓ ଜ୍ୟୋତିଷ ବିଦ୍ୟାରେ ନିପୁଣ ପାରଦର୍ଶିତା ଲାଭକରି ଅନେକ ବଡ଼ ବଡ଼ ନ୍ୟାୟ ସଭାରେ ସୁବକ୍ତାଭାବେ ଖୁରୁଧା ଖିଲ୍ଲଭିତରେ ଅନେକ ଗ୍ରାମ୍ୟ ବିବାଦ, ଯାନିଯାତ୍ରା କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରି ସଫଳ କାମ ହୋଇ ସମ୍ମାନ ଅର୍ଜନ କରିଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏପରି ଗୋଟିଏ ଦିନ ନଥିଲା, ଯେଉଁଦିନ କି ଜଣେହେଲେ କିଏ ବାହାର ଲୋକ, କୋଷ୍ଠି, ନ୍ୟାୟ, ଗୀତ ଓ ମାଲମୋକଦ୍ଦମା ପରାମର୍ଶ ପାଇଁ ତାଙ୍କ ପାଖକୁ ଆସୁ ନଥିଲା । କର୍ମ ମୁଖର ଜୀବନରେ ସାମାନ୍ୟ ଫୁରସତ ମିଳିଲେ ଗୀତ ରଚନା କରି ପାଖରେ ଥିବା ବହିର ପୃଷ୍ଠା ବା ବିଭିନ୍ନ ଖାତାରେ ରଚିତ ଗୀତ ଲେଖିଦେଇ ଥିବାରୁ ସମସ୍ତ ରଚନା ମିଳିବା ଓ ତାକୁ ଏକତ୍ରିତ କରିବା ସମ୍ଭବ ହୋଇ ପାରିଲା ନାହିଁ କିମ୍ବା ତାଙ୍କ ଜୀବିତାବସ୍ଥାରେ ପୁସ୍ତକା-କାରରେ ପ୍ରକାଶ କରିବା ଆଶା ଫଳବତୀ ହୋଇପାରିଲା ନାହିଁ । ଏହା ବ୍ୟତୀତ ଅନେକ ଗୀତ, ପାଲା, ଦଣ୍ଡନାଚ, ସଙ୍କୀର୍ତ୍ତନ ଗାୟକମାନଙ୍କୁ ହଠାତ୍ ରଚନା କରି ଦେଇଥିବାରୁ ତାହା ଦୁଷ୍ପ୍ରାପ୍ୟ ହେଲା । ତାଙ୍କ ଧର୍ମ ଜାମାତା କବି, ଲେଖକ, ସମ୍ପାଦକ ଓ ପୂର୍ବତନ ଯୋଗାଣ ଓ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର ଓ ତାଙ୍କ ସହଧର୍ମିଣୀ ବକ୍ସି ଜଗବନ୍ଧୁ କଲେଜ ଅଧ୍ୟାପିକା ଶ୍ରୀମତୀ ହରପ୍ରିୟା ମହାପାତ୍ରଙ୍କ ସାହାଯ୍ୟ, ଉତ୍ସାହ, ଉଦ୍ଦୀପନା ହେତୁ ପୁସ୍ତକଟି ପିତାଙ୍କ ୧ମ ସାମ୍ବତ୍ସରିକ ଶ୍ରାଦ୍ଧବାସରେ ଅର୍ଥାତ୍ ତା ୧୩-୧୨-୮୧ ରିଖରେ ଆତ୍ମପ୍ରକାଶ କରୁଥିବାରୁ ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛୁ । 'ପାଞ୍ଚଜନ୍ୟ' ସୁଯୋଗ୍ୟ ସମ୍ପାଦକ ଶ୍ରୀଯୁକ୍ତ ଦୁର୍ଗାଚରଣ କୁଅଁର ଓ ପିତାଙ୍କ ଗୁଣମୁଗ୍ଧ ହିତାକାଙ୍କ୍ଷୀ ବନ୍ଧୁଗଣଙ୍କ ପ୍ରରୋଚନା ଓ ଉଦ୍ଦୀପନା ଦାନ ପାଇଁ ସେମାନଙ୍କ ନିକଟରେ ଋଣୀ । କୁମାର ସମ୍ଭବ, କୁରୁକ୍ଷେତ୍ର ମିଳନ ବ୍ୟତୀତ ସମସ୍ତ ଗୀତ ଦେବାଦେବୀଙ୍କ ବନ୍ଦନା, ରଚନା ଶୈଳୀ, ଭକ୍ତିଯୁକ୍ତ ପ୍ରଣାଳୀରେ ରଚିତ ହେତୁ ଆଧୁନିକ ପାଠକଙ୍କ ନିକଟରେ ନାରିକେଳ ଶସ ପରି ସୁପାଠ୍ୟ ହୋଇ ନପାରେ । ମାତ୍ର ପିତୃଦେବଙ୍କ ଯୁକ୍ତିରେ "ଏବର ଶୀତତାପ ନିୟନ୍ତ୍ରିତ ନବତନ ପାସାଦ ଅପେକ୍ଷା କୋଣାର୍କ, ତାଜମହଲର ଜ୍ୟୋତି ଯୁଗେ ଯୁଗେ ଝଟକୁଥିବ, ନ୍ୟାୟରେ ପୁସ୍ତକଟି ପ୍ରକାଶ କରିବାକୁ ସାହସୀ ହେଲୁ ।

ବାପା ନିୟମିତ ରେଡ଼ିଓ ଶ୍ରୋତା । ଖେଳ ଖବର ଓ ଆଧୁନିକ କବିତା ଆବୃତ୍ତି ଶୁଣିବା ମାତ୍ରେ ରେଡ଼ିଓ ବନ୍ଦକରି ଦିଅନ୍ତି । ତାଙ୍କର ଯୁକ୍ତି ପାଶ୍ଚାତ୍ୟ ଅନୁକରଣରେ ଓଡ଼ିଆ ଅଛୁଣ୍ଡା ଦୁର୍ବୋଧ କବିତା ନଳନଳ ବନ୍ୟା, ମନର ହଳଦିଆ, ଚାତ, ବାଇଗିଣି ଆଶା, ଦୁଃଖୀମାନେ କୋଚଟ ଲୁଗାପିନ୍ଧି ଖାନନଗର

ଯାନ୍ତି, ହିଡ଼ମ୍ବିଜ ଉପମା କବିତାର ସମ୍ମାନ ନଷ୍ଟ କରୁଛି । ଗଦ୍ୟ ଅପେକ୍ଷା କବିତା ଶୁଣିଲେ ମନରେ ଭାବାନ୍ତର ଆଣି ହୃଦୟରେ ପୁଲକ ଜନ୍ମାଏ । ବଣରେ ପଶୁପକ୍ଷୀ ଆକୃଷ୍ଟ ହୋଇ ମଣିଷ ପାଖକୁ ଆସନ୍ତି । ମାତ୍ର ଏପରି କବିତା ଶୁଣିଲେ ପଶୁପକ୍ଷୀ ବଣ ଛାଡ଼ି ପଳାଇବେ । କାଳିଦାସଙ୍କ ଶକୁନ୍ତଳା, ମେଘଦୂତ ଆଦି କବିତା ଇଂରେଜୀରେ ଅନୁଦିତ ହୋଇ ବିଦେଶରେ ସମ୍ମାନିତ ହେଉଛି । କେତୋଟି ଅତ୍ୟାଧୁନିକ ଓଡ଼ିଆ କବିତା ଭାଷାନ୍ତର ହୋଇ ନାମ କଲାଣି ? ଏ କବିତାରେ ସମୟ ଓ ଶକ୍ତିର ଅପଚୟ ନକରି ଗଦ୍ୟ ଲେଖିଲେ ସହସ୍ରଗୁଣେ ସାହିତ୍ୟର ମଙ୍ଗଳ ହୁଅନ୍ତା । ଖାଲି ଲେଖକ ସଂଖ୍ୟା ବୃଦ୍ଧି କବିତାର ମାନଦଣ୍ଡ ହୋଇ ନପାରେ ସୁଧୀ ପାଠକବର୍ଗ ଦୁଗ୍ଧରୁ ହଂସ ସାରାଂଶ ଗ୍ରହଣ କଲାପରି ରସ ଗ୍ରହଣ କରିବେ ବୋଲି ଆଶା ।

ପିତାଙ୍କର ଅନ୍ତିମ ଅଭିଳାଷ 'ଜନନୀ ଜନ୍ମଭୂମିର ଇତିହାସ'ଟି ଏଥିସହ ଲିପିବଦ୍ଧ କରୁଛି । ପରିଶେଷରେ ନିଉଆର୍ଟ ପ୍ରେସର ପ୍ରତିଷ୍ଠାତା ଓ କର୍ମଚାରୀବୃନ୍ଦ ଅକ୍ଲାନ୍ତ ପରିଶ୍ରମ କରି ଅଳ୍ପ ସମୟରେ ପୁସ୍ତକଟି ମୁଦ୍ରଣ କରିଥିବାରୁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

॥ ଇତି ॥

ତା ୨୫-୧୧-୮୧ ପ୍ରକାଶକ

**ଶ୍ରୀ ମହେନ୍ଦ୍ର ନାରାୟଣ (ଦେଓ)**

**ହରିଚନ୍ଦନ ମହାପାତ୍ର**



# ଗଡ଼ ମଲ୍ଲପଡ଼ାର ଇତିହାସ

## ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ

ଅବସ୍ଥିତ :—

ଖଣ୍ଡଗିରିର ପଶ୍ଚିମର ଦୁଇମାଇଲ ଦୂରରେ ଏହାର ଅବସ୍ଥିତ । ଦେଉଳିଆ ପର୍ବତ, ଉତ୍ତରରେ ଅଣ୍ଡାରୁଆ, ଦକ୍ଷିଣରେ ଗଡ଼ ଜାଗପୁର (ଜାଇମାଟିଆ) ପୂର୍ବରେ ଘାଟିକିଆ ନୈଗଡ ଜାନ୍ତି ଯୋଡ଼ାକୁସୁମଗଡ଼ ଅଧିନସ୍ଥ ଗ୍ରାମ ସମୂହ—୧-ଗଡ଼ ମଲ୍ଲପଡ଼ା, ୨-ପାଇକରାପୁର, ୩-ସାମପୁର, ୪-ନୂଆଗାଁ, ୫-ମଧୁପୁର, ୬-ବାଉଁଶପୁଟ, ୭-ବର ପାଟଣା, ୮-ଗୋଠପାଟଣା ।

ପୂର୍ବେ ଉକ୍ତ ଗ୍ରାମମାନଙ୍କରେ ବସତିଥିଲା । ପଠାଣ ଓ ମହରଟ୍ଟା ବର୍ଗୀ-ମାନଙ୍କ ଘନ ଘନ ଆକ୍ରମଣ ଫଳରେ ଗ୍ରାମ ସବୁ ଧ୍ୱଂସ ସ୍ତୂପରେ ପରିଣତ ହୋଇ ଏବେ କେବଳ ଧ୍ୱଂସାବଶେଷ ଆଉ ନକ୍ସାରେ ନାମମାତ୍ର ରହିଅଛି ।

୧୭୧୪ ରୁ ୧୭୫୧ ବର୍ଷ ମଧ୍ୟରେ ବିଭିନ୍ନ ଅଞ୍ଚଳରୁ ଆଗନ୍ତୁକମାନଙ୍କୁ ଭୂତପୂର୍ବ ଜମିଦାରମାନେ ଅଣାଇଗଡ଼ରେ ରଖାଇଥିଲେ ।

ଗଡ଼ମଲ୍ଲପଡ଼ା :—

ପୂର୍ବତନ ଗ୍ରାମ, ଗ୍ରାମର ଦକ୍ଷିଣରେ ଥିବା ସରଡାର ବରଠାରେ ଥିଲା । ଏଠାରେ ଥିବା ବରାଟ ଗୋହିରୁ ଗ୍ରାମ ଦାଣ୍ଡ ରୂପେ ବ୍ୟବହୃତ ହେଉଥିଲା । ଗୋହିର ଦୁଇପାଖରେ ପ୍ରଚୁର ଖପରା, ଉଦ୍ଧଚିହ୍ନ, ଭଗ୍ନ ଦେବା ଦେବୀମୂର୍ତ୍ତି, ସରଡାର କୂଅ ଏଠାରେ ଅଛି । ନୂଆ ଗ୍ରାମର ଶେଷ ସୀମା ପୂର୍ବ ଦିଗରେ ଗାଡ ବାଡ଼ିରେ ଗ୍ରାମଦେବତା ଦୁର୍ଗାଣୀ ଠାକୁରାଣୀଙ୍କ ମନ୍ଦିର ଓ କୂଅ ଏବେ ପୋତି ହୋଇ ଯାଇଅଛି । ୧୮୯୧ ମସିହାରେ ଜମିଦାର ଷାରବଣ୍ଟ ହରିଚନ୍ଦନ ଠାକୁରାଣୀଙ୍କୁ ସେଠୁ ଆଣି ଏବର ମନ୍ଦିରରେ ଅବସ୍ଥାପିତ କରିଅଛନ୍ତି । ମନ୍ଦିରର ମୂଳଦୁଆ ତଥା ନିର୍ମାଣ ଆରମ୍ଭ ଥିବା ସମୟରେ ୪୨ ବର୍ଷ ବୟସରେ ଏହାଙ୍କର ମୃତ୍ୟୁ ହେବାରୁ ଶ୍ରୀ ହରେକୃଷ୍ଣ ହରିଚନ୍ଦନ ୧୯୭୬ ମସିହାରେ ମନ୍ଦିର କାର୍ଯ୍ୟ ସମାପନ କରି ଅଛନ୍ତି ।

ଗ୍ରାମର ଦକ୍ଷିଣରେ 'ମଠତୋଟା'ରେ ଥିବା ଭଗ୍ନ ଶିବଲିଙ୍ଗ ପାଖେ ପ୍ରଥମ ନାରୀ କବି ଶ୍ରୀମତୀ ବୃନ୍ଦାବତୀ ଦାସୀଙ୍କ ବସାଟ ମଠ ଓ କୂପ ଥିଲା । ୧୭୦୦ ଖ୍ରୀଷ୍ଟାବ୍ଦରେ ଶ୍ରୀମତୀ ବୃନ୍ଦାବତୀ ଦାସୀ ପ୍ରଥମ ନାରୀ କବି କୃଷ୍ଣ ପ୍ରେମର ଅଧିକାରିଣୀ ଥାଇ "ପୂର୍ଣ୍ଣତମ ଚନ୍ଦ୍ରୋଦୟ" ରଚନା କରିଥିଲେ । ତାଙ୍କ ସ୍ୱାମୀ ଶ୍ରୀ କୃପାସିନ୍ଧୁ ଦାସ ପୁତ୍ର ଶ୍ୟାମ ଦାସ ଯଥାକ୍ରମେ ଭକ୍ତ ରତ୍ନାବଳୀ ଉପାସନା ଚନ୍ଦ୍ରୋଦୟ, ହରିଭକ୍ତ ଚନ୍ଦ୍ରୋଦୟ ଓ ଚନ୍ଦ୍ରଶେଖର ଦାସ ଶ୍ରୀକୃଷ୍ଣ ତତ୍ତ୍ୱ ଚନ୍ଦ୍ରୋଦୟ ରଚନା କରିଥିଲେ । ରଚନା ସମୟ ଓ ସ୍ଥାନ ସମ୍ବନ୍ଧେ—

ଶକାବ୍ଦ ଷୋଡ଼ ଦଶ ଶତ, ଚଉଦ ବରଷ ଯୁକତ
ବୈଶାଖ ମାସ ଶୁକ୍ଳପକ୍ଷ, ତୃତୀୟା ତଥି ଦ୍ୱିଜା ଋକ୍ଷ ।
ଆଇଣ ମଲପଡ଼ା ସୁସ୍ଥ, ବସନ୍ତ ମଣ୍ଡପେ ବସିକରି ।
ରଚନା କଲି ଏହୁ ଗୀତ, କୃଷ୍ଣ ଚରଣେ ଦେଇ ଚିତ୍ତ ।
ଶ୍ରୀକୃଷ୍ଣ ଚରଣେ ମାନସ, ଦେଇ କହଇ ଶ୍ୟାମ ଦାସ ।

ଭକ୍ତ ରତ୍ନାବଳୀ

ଶକ ଅବଦ ଛଡ଼ ଶତ, ଶତ ଏକବିଂଶ ବରଷ ।
ଦିବ୍ୟସିଂହ ଦେବ ରାଜନ, ତ୍ରିଦଶ ଅଙ୍କେ ଏ ରଚନ ।
ବୈଶାଖ ମାସ ଶୁକ୍ଳପକ୍ଷେ, ପଞ୍ଚମୀ ମୃଗଶିରା ଋକ୍ଷେ ।
ଶୁଭେ ହୋଇଲା ଗ୍ରନ୍ଥ ଶେଷ, ଶୁଣି ସକଳ ପାପ ନାଶ ।
କହଇ ଦାସୀ ବୃନ୍ଦାବତୀ, କୃଷ୍ଣ ଚରଣେ ନେଇ ମତି ।

ପୂର୍ଣ୍ଣତମ ଚନ୍ଦ୍ରୋଦୟ

## କବିଙ୍କ ବଂଶଲତା

ମଲପଡ଼ା ଗଡ଼ ନିବାସୀ ପରମ ବୈଷ୍ଣବ ଜଗନ୍ନାଥ ଦାସ

|

ଚନ୍ଦ୍ରଶେଖର ଦାସ (ଶ୍ରୀକୃଷ୍ଣ ଚନ୍ଦ୍ରୋଦୟ ପ୍ରଣେତା)
ସ୍ତ୍ରୀ ବୃନ୍ଦାବତୀ ଦାସୀ (ପୂର୍ଣ୍ଣତମ ଚନ୍ଦ୍ରୋଦୟ ଲେଖିକା)

|

ଶ୍ୟାମ ଦାସ (ହରିଭକ୍ତ ଚନ୍ଦ୍ରୋଦୟ, ଭକ୍ତ ରତ୍ନାବଳୀ ଲେଖକ)

|

କୃପାସିନ୍ଧୁ ଦାସ (ଉପାସନା ଚନ୍ଦ୍ରୋଦୟ ପ୍ରଣେତା
ଏହାଙ୍କ ମଠ ଥିବା ଯାଗା ମଠ ତୋଟା ନାମରେ ଏବେବି ପରିଚିତ ।

(ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ଖୁରଧା ଇତିହାସ ପୃ ୧୩୭)

ପୂର୍ବ ଇତିହାସ :—

ସ୍ୱାଧୀନ ଉତ୍କଳ ନରପତିମାନେ ରାଜ୍ୟ ଶାସନର ସୁବନ୍ଦୋବସ୍ତ ପାଇଁ ଗୋଟିଏ ଗୋଟିଏ ଗଡ଼ ବସାଇ ସେଠାରେ ଅଧସ୍ତନ ରୂପେ ସାମନ୍ତରାଜା ପଦ ସୃଷ୍ଟି କରି ଜଣେ ଜଣେ ରାଜା ଜମିଦ ରକ୍ଷ୍ମ ରଖାଇଥିଲେ । ସେମାନଙ୍କୁ ଖଣ୍ଡାଏତ ଉପାଧି ଦିଆ ଯାଇଥିଲା । 'ଜାତସ୍ୟ ଖଡ଼୍ଗ' ଏମାନଙ୍କୁ ଦିଆଯାଇଥିଲା । ଏ ସମ୍ବନ୍ଧେ ଉଲ୍ଲେଖ ଅଛି । ୧-ଦଶଚନ୍ଦନ—ପ୍ରଥ ଗଡ଼ଜାତ ରାଜାମାନଙ୍କର ପୁରାତନ ରେକର୍ଡରେ ଖଣ୍ଡାଏତ (ରାଜକୀୟ ଉପାଧି) ମହାପାତ୍ର । ୨-ଶାସନ ଏ ସମ୍ବନ୍ଧେ ମିଃ ମାଡ଼ାକ୍ସ ଲେଖିଛନ୍ତି ।

'Garh Malipara x x x is a recusant of the old teudal system which is ancient 'days before the British conguest was burderned with Military duties The holder of the Jagir is known and styled as "Khanda" (shord or weapon) and it is said that the tenure was allied to kallajit or the garjat estate in oricsa as regards its ancidents.

In support of these contention the following authorities have been relied upon.

In Mr. Maddax Final report on survey and settlement in orissa (Vol 2 Page 227) the term "Khanda" has been explained as meaning of a "Sworo"' It was applied to the Killajit Raja's of of the sea coast It is also the name of the principal agricultural castes and was used of the watch man in charge of the Zamidar's Cucheri.

ଆଇନ ଆକବରୀ ଲେଖକ ଆବୁଲ ଫାଜଲ ଲେଖିଛନ୍ତି :—

ଓଡ଼ିଶାରେ ପ୍ରକୃତ ଭୂମ୍ୟାଧିକାରୀ ଖଣ୍ଡାଏତମାନେ ଥିଲେ । ଗଜପତିଙ୍କ ଦରବାରରେ ଖଣ୍ଡାମୁଠି ଠାରୁ ଲେଖନମୁନ ପର୍ଯ୍ୟନ୍ତ ସମସ୍ତ ରାଜକାର୍ଯ୍ୟ ସେମାନଙ୍କ ହସ୍ତଗତ ଥିଲା । ବେତନ ବଦଳେ ଗନ୍ତାଘରୁ ନଗଦ ଟଙ୍କା ପାଉନଥିଲେ ଓ

ଅଧିକାଂଶ ଭୂମିଖଣ୍ଡ ଜାଗିରି ସ୍ୱରୂପ ଦୃଷ୍ଟିରେ ଭୋଗ କରୁଥିଲେ । ଖଣ୍ଡାୟତ-ମାନଙ୍କ ବାହୁବଳରେ ଓଡ଼ିଶା ବହୁକାଳ ପର୍ଯ୍ୟନ୍ତ ସ୍ୱାଧୀନତା ରକ୍ଷା କରିବାକୁ ସକ୍ଷମ ହୋଇଥିଲା ।

(ଛ ମାଣ ଆଠଗୁଣ୍ଠ ପୃ ୮୭)

ଗଡ଼ ମଲିପଡ଼ାର ଜମିଦାର ବଂଶ ଗଜପତିଙ୍କ ପ୍ରଦତ୍ତ ତଥା ପ୍ରଚଳିତ ରାଜକୀୟ ଉପାଧି ହରିଚନ୍ଦନ (୧) ମହାପାତ୍ର (୨) ପୁରୁଷାନୁକ୍ରମେ ବ୍ୟବହାର କରି ଆସୁଅଛନ୍ତି ଓ ଏହା ହାଇକୋର୍ଟଙ୍କ ଦ୍ୱାରା ଐତିହାସିକ ତଥ୍ୟଭାବେ ପ୍ରମାଣିତ ହୋଇଛି ।

୧—ହରିଚନ୍ଦନ—ଶ୍ରୀଜଗନ୍ନାଥଙ୍କ ଚନ୍ଦନ ସେବା ତଥା ରାଜକୀୟ ଉପାଧି

୨—ମହାପାତ୍ର—ରାଜ୍ୟର ସର୍ବୋଚ୍ଚ ଶାସକ ବା ଗଭର୍ଣ୍ଣର ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କ ଅଶୋକଙ୍କ ଶିଳାଲିପିରୁ ଉଦ୍ଧୃତ ଓ ପାଞ୍ଚଜନ୍ୟରେ ପ୍ରକାଶିତ ଐତିହାସିକ ପ୍ରସିଦ୍ଧି ବିଷୟର ପୃ ୩୪ ଦ୍ରଷ୍ଟବ୍ୟ)

ଉକ୍ତ ରିପୋର୍ଟର ୪୩୧ ପୃଷ୍ଠାରେ ପୁନଶ୍ଚ ଉଲ୍ଲେଖ ଅଛି :—

Haldia and Malipara are two khandayati tenure held at a fixed quit rent from before the British conguest and recognised by the British Government in 1819.

The khandayat do not render any service to Government but regard themselves almost as tributary chiefs and many of the pecular custom of the killajit estate are found among them in full force'.

ଅର୍ଥାତ ବ୍ରିଟିଶ ଅଧିକାର ପୂର୍ବରୁ ହଳଦିଆ ଓ ମଲିପଡ଼ା ଦୁଇଟି "ଖଣ୍ଡାୟତ ମାହାଲ" ନିର୍ଦ୍ଧାରିତ ଜମା ଦେଇ ଉପଭୋଗ କରୁଥିଲେ ତାହାକ ୧୮୧୯ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ସରକାରଙ୍କ ଗୋଚରକୁ ଆସିଲା । ସେମାନେ କୌଣସି ସରକାରୀ କାର୍ଯ୍ୟ ନକରି କିଲଜାତ (ଗଡ଼ଜାତ) ରାଜାଙ୍କ ପରି ପୂର୍ଣ୍ଣ ମାତ୍ରାରେ ରାଜକୀୟ ବିଧି ଉପଭୋଗ କରୁଥିଲେ ।

ମି· ମାଡ୍ଡାକ୍ସ ଖୁରଧା ସର୍ଭେ ସେଟଲମେଣ୍ଟ ରିପୋର୍ଟ (୨ୟ ଭଲ୍ୟୁମ ପୃ ୨୨୭) ରେ ଉଲ୍ଲେଖ କରିଅଛନ୍ତି ଖଣ୍ଡା (Sword) ଖଣ୍ଡାଏତ ଉପକୂଳ ଅଞ୍ଚଳ କଳକାତ ରାଜାମାନଙ୍କୁ ବୁଝାଉଥିଲା । ଏହା ବାଦ୍ ଗୋଟିଏ ମୂଖ୍ୟ କୃଷିଜୀବି ଜାତି ଯେ କି ଜମିଦାରମାନଙ୍କ କଚେରୀ ରକ୍ଷକ ତାଙ୍କୁ ଖଣ୍ଡାଏତ କୁହାଯାଏ ।

ପୁଣି ୪୩୧ ପୃଷ୍ଠାରେ ମଧ୍ୟ ଏହା ଉଲ୍ଲେଖ ଅଛି :—

Mr. Sterling's account of orissa edition 1904 Page 44 The Raja's own estate of Khurdha contained during the time of Raja Mansigh in 1592 (999 Amali) 71 killas of which Malpiara was one of them

(Page 39) Term 'Khandayt' as persons entitled to wear the Khanda or Natural sword of Orissa.

୧୫୯୨ ଖ୍ରୀଷ୍ଟାବ୍ଦ ରାଜା ମାନସିଂହଙ୍କ ସମୟରେ (ଖୁରଧା) ରାଜାଙ୍କର ୭୧ଟି କିଲ୍ଲାଥିଲା । ସେଥିରୁ ମଲପଡ଼ା ଗୋଟିଏ । ଓଡ଼ିଶାର ଜାତୀୟ ଖଡ଼୍ଗ ରକ୍ଷକଙ୍କୁ ଖଣ୍ଡାଏତ କୁହାଯାଉଥିଲା ।

ଉପରୋକ୍ତ ତଥ୍ୟ ଅନୁଯାୟୀ ଗଡ଼ ମଲପଡ଼ା ୧୫୯୨ ଖ୍ରୀଷ୍ଟାବ୍ଦ ପୂର୍ବରୁ ଥିଲା ଓ ୧୯୫୩ ପର୍ଯ୍ୟନ୍ତ ଏହା ଖଣ୍ଡାଏତ ଜାଗିର ବୋଲି ସରକାରୀ କାଗଜାତରେ ଲିପିବଦ୍ଧ । କୌଳିକଧାରା ପରମ୍ପରା ଅନୁଯାୟୀ ଜମିଦାରମାନେ ପିତାଙ୍କ ମୃତ୍ୟୁପରେ ଗଦିନସିନ ସମୟେ ଦରବାର କରି ଗୁରୁ, ପୁରୋହିତଙ୍କ ଉପସ୍ଥିତିରେ ହରିଚନ୍ଦନ ମହାପାତ୍ର' ଉପାଧି ଗ୍ରହଣ କରନ୍ତି ।

ମଲପଡ଼ା ଗଡ଼ର ଜମିଦାର ନରସିଂହପୁର ରାଜାଙ୍କ ଭାଇଥାଇ ସେଠାରେ ମହାନଦୀ କୂଳରେ ଥିବା କାକୁଡ଼ିଆ ଗ୍ରାମରେ ରହୁଥିଲେ । ମଲପଡ଼ାର ଜମିଦାରୀ ରାଜସ୍ୱ ଆଦାୟ ଦାୟିତ୍ୱ ସାମନ୍ତରାୟ ବଂଶ ଯାହାଙ୍କୁ "ବଡ଼ଯାନ୍ତ୍ର" କୁହାଯାଉ ଅଛି ତାଙ୍କ ଉପରେ ନ୍ୟସ୍ତ କରିଥିଲେ । ୧୪୭୪ ଖ୍ରୀଷ୍ଟାବ୍ଦରେ ଶ୍ରୀପୁରୁଷୋତ୍ତମ ଦେବଙ୍କ ସହ ଦାକ୍ଷିଣାତ୍ୟ ଅଭିଯାନରେ ଯାଇଥିବା ସମୟେ ଜମିଦାର ଧନଞ୍ଜୟ ହରିଚନ୍ଦନ ମହାପାତ୍ର ସଙ୍ଗରେ ନେଇଥିବା ପାରା ପଞ୍ଜୁରୀରୁ ଉଡ଼ି ଆସିବାରୁ ଜମିଦାରଙ୍କ ମୃତ୍ୟୁ ହେବା ଭାବି ତାଙ୍କ ସ୍ତ୍ରୀ ବିଧବା ହୋଇଥିଲେ । ଯୁଦ୍ଧରୁ ଫେରି

ସ୍ତ୍ରୀ ବିଧବା ହେବା ଅବଗତ ହୋଇ ଶାସ୍ତ୍ରୀୟ ପ୍ରଥା ଅନୁଯାୟୀ ସ୍ତ୍ରୀଙ୍କୁ ପୁନଶ୍ଚ ଜାତି ପନ୍ଥାଇବା "ଦ୍ୱିତୀୟ ଘର" ହେବାପରି ହେବ ଭାବି ବିରକ୍ତିରେ ସେଠୁ ଆସି ସ୍ଥାୟୀଭାବେ ଗଡ଼ ମଲିପଡ଼ାରେ ବାସକଲେ । ସେଠୁ ଆସିବା ସମୟରେ ଗୋଟିଏ (ପୁନା ବାରିକ) ଘର ଓ ଆଦିବାସୀ ପରିଡ଼ା ଘର ସାଥିରେ ଆଣି ଗୋଠ ପାଟଣାରେ ରଖାଇଥିଲେ ।

(୧) ଏଠା ଜମିଦାର ଖୁବ୍ ପ୍ରତିପତ୍ତିଶାଳୀ ଥାଇ କଟକ ନବାବମାନଙ୍କୁ ରାଜସ୍ୱ ଦେଉ ନଥିଲେ ବା ସାକ୍ଷାତ କରି ନଥିଲେ ।

ଏ ସମ୍ବନ୍ଧେ ଖୁର୍ଦ୍ଧା ଇତିହାସ ୧୦୬ ପୃଷ୍ଠାରେ ଉଲ୍ଲେଖ ଅଛି :—

ତା ୨୦ । ୬ । ୧୬୭୧ ଖ୍ରୀଷ୍ଟାବ୍ଦରେ ଜମିଦାର ହନ୍ତା ଖାନ୍-ଇ-ଦୁରାନ ମୋଗଲ ସେନାପତି ପୁନ ୬ ଖୁର୍ଦ୍ଧା ଆକ୍ରମଣ କରି ୭୦୦ ଜମିଦାରଙ୍କୁ ହତ୍ୟା କରିଥିଲି ।

"ରଣପୁର ଖଣ୍ଡି ନରେନ୍ଦ୍ର, ଡମପଡା ଓ ମଲିପଡ଼ାର ଜମିଦାର ଦ୍ୱୟ ଯେ କି କୌଣସି ସୁବାଦାରଙ୍କୁ ପୂର୍ବେ ସାକ୍ଷାତ କରିନଥିଲେ ସେମାନେ ଖାନ-ଇ-ଦୁରାନଙ୍କୁ ସାକ୍ଷାତ କରି ରାଜସ୍ୱ ଦେବାକୁ ରାଜି ହୋଇଥିଲେ ।

ମୁସଲମାନ ଓ ବର୍ଗୀମାନଙ୍କ ଗଡ଼ ଉପରେ ଓ ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କରେ ଘନ ଘନ ଆକ୍ରମଣ ଓ ଲୁଣ୍ଠନ ଗୃହଦାହ ହେତୁ ବରପାଟଣା, ବାଉଁଶପୁଟ, ମଲିପଡ଼ା ସାବିକ ଗଡ଼ ବାସିନ୍ଦା ଅନ୍ୟତ୍ର ଗୃହ ନିର୍ମାଣ କରି ରହିଥିଲେ । ଅନେକ ପଳାତକ ହୋଇ ଯାଇଥିଲେ । ବରପାଟଣା ଗ୍ରାମରୁ ସୁନ୍ଦରରାୟ ବଂଶ, ଅଇଗିଣିଆ ବେହେରା ବଂଶ, ଘାଟିକିଆ ସରଦାର ବଂଶ ଘାଁଲାକୁ ଉଠିଯାଇ ବସବାସ କରି ଅଛନ୍ତି । ହାଟୁଆ ପାଟକ ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କୁ ଉଠି ଯାଇଥିଲେ ।

## ଜମିଦାରଙ୍କ ବଂଶଲତା

ଧନଞ୍ଜୟ ହରିଚନ୍ଦନ ମହାପାତ୍ର (୧୪୧୫—୧୪୭୫)

× | × × ପ୍ରଥମେ ନରସିଂହପୁରରୁ ଆସିଥିଲେ ।

ଶରଣୀ ହରିଚନ୍ଦନ ମହାପାତ୍ର (୧୫୪୫—୧୫୭୫)

ଖୁର୍ଦ୍ଧା ଗଡ଼ ସ୍ଥାପନରେ ସାହାଯ୍ୟ କରିଥିଲେ ।

| × × × ଶ୍ୟାମ ସୁନ୍ଦର ହରିଚନ୍ଦନ (୧୫୭୫—୧୬୫୦)

ସାମପୁର ଗ୍ରାମ ବସାଇଥିଲେ ।


ଗୋଲକ ହରିଚନ୍ଦନ (୧୬୫୧—୧୭୩୫)
ଗଦାଧର ହରିଚନ୍ଦନ (୧୭୭୫—୧୭୮୦)
ଧ୍ଵଜସ୍ତ ହରିଚନ୍ଦନ (୧୭୮୨—୧୮୨୪)
ବାସୁଦେବ (୧୭୮୫—୧୮୨୧)
ଜନକଲତା (ହଲଦଆ)
ମଧୁସୂଦନ
ସ୍ତ୍ରୀ ଚମ୍ପା ଦେଇ (ମୋଟଗା)
ସୋମନାଥ
ଧନେଶ୍ୱର
ଶ୍ରୀମ ବଡ଼ଜେନା
(ଫୁଲବାଣୀ ପୁଅ)
ମିଛୁ ଦାସ
(ଫୁଲବାଣୀ ପୁଅ)
ଗାରବର
ସ୍ତ୍ରୀ ବେଦ୍ଧଣୀ (ଦେଲ କଣ୍ଟି)
ରାମକୃଷ୍ଣ
କୃଷ୍ଣବହ୍ଲାସ
ବ୍ରଜବନ୍ଧୁ
ପରୀକ୍ଷିତ,
ବିପିନ
ଭ୍ରମର
କ୍ଷେତ୍ରବାସୀ
ନେତ୍ରାନନ୍ଦ

ମଦନ ମୋହନ
ଡାଲଯୋଡ଼ାର ଦୁଇ ସ୍ତ୍ରୀ ମୃତ
ସ୍ତ୍ରୀ ଶ୍ରୀମତୀ ଦେବୀ(ବ୍ରାହ୍ମଣ ସାଇଲେ)

ଦୈତାରି
ଡାଲଯୋଡ଼ା
(ଘରଜୋଇଆ)

ରାଧାମୋହନ
ପୋଷ୍ୟପୁତ୍ର
(ନୂଆପଲ୍ଲୀ)

ଦୁର୍ଯ୍ୟୋଧନ

କାମଦେବ

ହରେକୃଷ୍ଣ  ଜ 6.1900 - 22.12.80
ସ୍ତ୍ରୀ ଲାବଣ୍ୟ କୁମାରୀ ଦେବୀ (ବଲାଙ୍ଗିର ପାଟଣା)

ମହେନ୍ଦ୍ର
ସ୍ତ୍ରୀ ବସନ୍ତମଞ୍ଜରୀ (ଅମ୍ବୋ)

ବିରୁଧେନ୍ଦ୍ର (ମୃତ୍ୟୁ ୧୯୫୮ ଆଷାଢ଼ ମାସ)

ସୁର ପ୍ରତାପ
ବ୯ର୍ଷରେ ମୃତ୍ୟୁ
ଜନ୍ମ ୧୯୫୪, ମୃତ୍ୟୁ ୧୯୬୩

ଦୁର୍ଗାମାଧବ
(ପୋଷ୍ୟପୁତ୍ର
ବିରୁଧେନ୍ଦ୍ର)

ନୀଳମାଧବ

ରାଧାମାଧବ
(ପୋଷ୍ୟପୁତ୍ର
ଅଟଳ ବିହାରୀ ହରିଚନ୍ଦନ

ଇନ୍ଦୁମାଧବ
ବ୧୮ର୍ଷ ୧୯୭୨ ଆଶ୍ୱିନ
ଶୁକ୍ଳ ଚତୁର୍ଥୀରେ ମୃତ

ସୌଭାଗ୍ୟ ଶଙ୍କର

ସିଦ୍ଧାର୍ଥ

ଭବାନୀ ଶଙ୍କର

ଧନଞ୍ଜୟ ହରିଚନ୍ଦନ ମହାପାତ୍ର :—

ଏ ପୁରୁଷୋତ୍ତମ ଦେବଙ୍କ ସହ ୧୪୭୪ ଖ୍ରୀଷ୍ଟାବ୍ଦ ଦାକ୍ଷିଣାତ୍ୟ ବିଜୟକୁ ଯାଇଥିଲେ । ଶ୍ରୀ ଗଜପତି ମହାରାଜାଙ୍କ ମୋହରଯୁକ୍ତ ଆଦେଶନାମା (ତାଙ୍କ ପତ୍ରରେ ଲିଖିତ) ଯୁଦ୍ଧପାଇଁ ଦକ୍ଷିଣକୁ ଯିବାର ପ୍ରମାଣପତ୍ର ରହିଅଛି ।

୨—ଶରଣୀ ହରିଚନ୍ଦନ ମହାପାତ୍ର :—

ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦଦେବଙ୍କ କର୍ମଚ୍ୟୁତ କୃତଘ୍ନ ଶିଖି ଓ ମନାଇ ମହାପାତ୍ରଙ୍କ ନିମକ ହାରାମି ଷଡ଼ଯନ୍ତ୍ର ହେତୁ ଗଜପତି ବାଲେଶ୍ୱର ବାଟେ ବଂଗ ନବାବଙ୍କ ସହ ଯୁଦ୍ଧରେ ବ୍ୟାପୃତ ଥିବା ସମୟରେ ସମ୍ବଲପୁର ଆଡ଼ୁ କଳାପାହାଡ଼କୁ ଅଣାଇ ବାରବାଟୀ ଦୁର୍ଗ ଦଖଲ କରି ମୁକୁନ୍ଦଦେବଙ୍କୁ ଯାଜପୁର ପାଖେ ହତ୍ୟା କରାଯାଇ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଥିଲା । ଦେବାଦେବୀ ମନ୍ଦିର ମୂର୍ତ୍ତି ଧ୍ୱଂସ ଅରାଜକତା ସମୟରେ ଶ୍ରୀଜଗନ୍ନାଥଙ୍କ ସେବା ପୂଜାରେ ଘୋର ଅବହେଳା ହୋଇଥିବା ବେଳେ ଏ ଶ୍ରୀରାମଚନ୍ଦ୍ର ଦେବଙ୍କୁ ଦକ୍ଷିଣ ଦିଗରୁ ଅଣାଇ ଖୋରଧା ଗଡ଼ ସ୍ଥାପନା ହେବାରେ ସାହାଯ୍ୟ କରିଥିଲେ ଏ ସମ୍ବନ୍ଧେ ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି ।

(୧୫୫୯—୧୫୬୮ ଖ୍ରୀଷ୍ଟାବ୍ଦ)

"ଏ ସମୟରେ ରାଜା ମହେନ୍ଦ୍ର ଗଡ଼ରେ ଓଡ଼ିଶାପାତ୍ର ଦନାଇ ବିଦ୍ୟାଧରଙ୍କ ପୁଅ ରାମଚନ୍ଦ୍ର ରାଉତରା ମହାପାତ୍ରଙ୍କୁ ଧରାଇଥିଲେ । ମୁକୁନ୍ଦଦେବ ଓ ତାଙ୍କ ପୁତ୍ରର ବୃଦ୍ଧିଭଞ୍ଜ ଏ ଦୁହେଁ ଏକାଦିନକେ ଯୁଦ୍ଧକରି ମଲେ ଓଡ଼ିଶା ଅରାଜ୍ୟ ହୋଇଲା ଏବଂ ଦେବତା ଓ ବ୍ରାହ୍ମଣଙ୍କ ନାଁ ବୁଡ଼ିଲା ।

ତହିଁ ଉତ୍ତାରୁ ଦକ୍ଷିଣ ଦିଗ ଝଣ୍ଡାଇତେ ରାମଚନ୍ଦ୍ର ରାଉତରା ମହାପାତ୍ରଙ୍କୁ ରାଜାକଲେ ସେ ତିନବର୍ଷ ପର୍ଯ୍ୟନ୍ତ ଗୋଟମାଗଡ଼ରେ ରହିଲେ । × ×

ତାଙ୍କୁ ସେଠାରେ ତିନଲୋକ ସେବା କରିଥିଲେ କୋକୋଲେ ବାଘୁପାତ୍ର ଏ ଦାନପାତ୍ରର ଭାଇ ଅଟେ । ଘୋଡ଼ାଉଆଁ ଝାଡ଼ୁ ପଶଡ଼ା ଓ ମଞ୍ଜିପଡ଼ା ଶରଣୀ ପାତ୍ର । ୧ ✻

---

✻ ପାତ୍ର—ରାଜ ପାତ୍ର ଅର୍ଥରେ ବ୍ୟବହୃତ

ପୁରୁଷୋତ୍ତମ ମଧ୍ୟସ୍ଥ ଖୋଲ୍ପଲ୍ଲ ଶୁଦ୍ଧ ଶୌଣ ବଲୀବିକ୍ରମସିଂହର ଖୋରଧା ବୋଲି ପଲ୍ଲୀ ଗୋଟିଏ ଥିଲା ତାହା ରାଜା ବିକ୍ରମ ସିଂହଙ୍କୁ ମାରି ତାହା ନାମ ଜଗନ୍ନାଥପୁର କଟକ ବୋଲି ଶୁଭ ଦେଲେ । ସେ ବନ୍ଦୀ ବିକ୍ରମ ସିଂହର ମୁଣ୍ଡକାଟି ବଡ଼ ଅବକାଶ ଭଣ୍ଡ ତଳେ ପୋତିଲେ । (ଚକଡ଼ା ପୋଥି ଓ ଚୟନ ଚକଡ଼ା ୧୯୫୯ରେ ପ୍ରକାଶିତ ।

(ପୃ ୫୬ ଖୁରଧା ଇତିହାସ ପୃ ୩)

ଏହାଙ୍କ ଅମଳରେ ଦାନ, ଦେବୋତ୍ତର ଓ ପ୍ରତ୍ୟେକ ରାଜକୀୟ ବିଧି ନିଜ ଇଲାକାରେ ପ୍ରଚଳିତ କରିଥିଲେ ।

୩—ଗୋଲକ ହରିଚନ୍ଦନ :— 1651-1735

ପିତାଙ୍କ ପ୍ରତିଷ୍ଠିତ ସମସ୍ତ ବିଧି ବ୍ୟବସ୍ଥା ଅକ୍ଷୁନ୍ନ ରଖିଥିଲେ । ସାମପୁର ଗ୍ରାମ ଏହାଙ୍କ ଅମଳରେ ବସାଯାଇଥିଲା । ଗଜପତିଙ୍କ ଗ୍ରହଣରେ ସମ୍ବଲପୁର ରଜା ବଳରାମ ଦେବଙ୍କ ସାହାଯ୍ୟ ପାଇଁ ସମ୍ବଲପୁର ଯାଇଥିବା ସମୟେ ଶ୍ରୀ ଦୁର୍ଗାଣୀ ଠାକୁରାଣୀଙ୍କୁ ସଙ୍ଗରେ ଆଣି ନରବଳୀ ଛେଲ ମହିଷବଳୀ ଦିଅଉଥିଲେ ।

୪—ଗଦାଧର :—

ଏ ଜଣେ ସାହସୀ ଅଶ୍ୱାରୋହୀ ଯେଛା ଥାଇ ମୁନଅଙ୍କୁ ଗଜପତିଙ୍କୁ ଭେଟି ନେଇ ଯାଉଥିବା ସମୟେ ଗଜପତିଙ୍କର ଦୁଷ୍ଟ 'ମହିଷାମେଣି' ନାମକ ଅଶ୍ୱକୁ ଦୌଡ଼ାଇ ଦୌଡ଼ାଇ ମାରି ଦେବାରୁ ଗଜପତି ପ୍ରୀତ ହୋଇ ''ଭିତରଗଣ୍ଡା ନାମଧେୟୀ ମା୧୪୮ଣ ଜମି ଏହାଙ୍କ ସ୍ତ୍ରୀଙ୍କୁ ତେଲ ହଳଦୀ ଖଣ୍ଡାସ୍ୱରୂପ ଲାଖରାଜ ବୃତ୍ତି ନେଇଥିଲେ ।

୫—ଧୃବଜୟ ହରିଚନ୍ଦନ :—

ବ୍ରିଟିଶ ସରକାର ନିଷ୍କର ଜମିରେ ଖଜଣା ବସାଇବା ଓ ଜାଗିର ଜମି ଉଚ୍ଛେଦ କରି ଅମଲାତନ୍ତ୍ର ଉପରେ ନିର୍ଭରକରି ସ୍ଥାନୀୟ ସମ୍ଭ୍ରାନ୍ତ ଲୋକଙ୍କୁ ହଇରାଣ କରିବା ହେତୁ ପାଇକ ବିଦ୍ରୋହ ସଙ୍ଗଠିତ ହେଲା । ଏଥିରେ ସମସ୍ତ ପ୍ରଜା ଓ ସ୍ଥାନୀୟ ଜମିଦାରଗଣ ପରୋକ୍ଷ ସାହାଯ୍ୟ କରି ନୟାଗଡ଼ ରଜା ବକ୍ସିଜଗବନ୍ଧୁ ବିଦ୍ୟାଧରଙ୍କୁ ରଣପୁର ରଜା କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କୁ ମଲିପଡ଼ା ଜମିଦାର ପିଣ୍ଡିକ ବାହୁବଳେନ୍ଦ୍ରଙ୍କୁ ନିଜ ରାଜ୍ୟରେ ଆଶ୍ରୟ ଦେଇଥିଲେ । ବ୍ରିଟିଶ କର୍ତ୍ତୃପକ୍ଷଙ୍କ ଜଏଣ୍ଟ ମାଜିଷ୍ଟ୍ରେଟ ଫରେଷ୍ଟର ଘନଘନ ତାଗିଦ ପରୱାନା ଓ ରାଜ୍ୟ ଶାସନ କରି । ପାଇଁ ହୁକୁମ ଜାରି

କଣବାରୁ ନୟାଗଡ଼ ରାଜା ତା ୨୭-୫-୧୮୨୫ ଶଟରେ ବକ୍ସିଙ୍କୁ ଓ ରଣପୁର କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କୁ ୧୮୨୭ ବ୍ରିଟିଶ ସରକାରଙ୍କ ପାଖେ ଆତ୍ମସମର୍ପଣ କରାଇ ଦେଲେ । ପିଣ୍ଡିକଙ୍କ ସଙ୍ଗ ଥିବା ବିଷ୍ଣୁ ମହାନ୍ତି ଓ ମଧୁ ମହାନ୍ତି ଆତ୍ମସମର୍ପଣ କରି ମଳିପଡ଼ାରେ ପିଣ୍ଡିକ ଥିବା କଥା ଜଣାଇ ଦେବାରୁ ବ୍ରିଟିଶ ଫୌଜ ମଳିପଡ଼ା ଘେରାଉକରି ପିଣ୍ଡିକଙ୍କୁ ଧରାଇ ଦେଲେ ଏହାଙ୍କ ବିରୁଦ୍ଧେ ନରହତ୍ୟା ଲୁଟତରାଜ ଆଦି ଗୁରୁତର ଅଭିଯୋଗ ଥିବାରୁ ପିଣ୍ଡିକ ୧୮୧୮ ମସିହାରେ ଧରାହେଲେ ରାଜକ୍ଷମା ନପାଇ ଯାବଜ୍ଜୀବନ ଦଣ୍ଡ ପାଇଲେ ।

4 R. Ker :o W. B. Bayley Dated 14 12-1818
(Rev. Board 18 A)

All paiks and their groof chiefs the Dalai and Dalbehera except Pindik Bahubalendra Gopal Chhotarai and Padmalabh Chhotarai should be Granted full and free pardon.

କଟକ କମିଶନର କଲିକତାପୋର୍ଟ ଉଇଲିୟମ ରାଜନୈତିକ ସେକ୍ରେଟେରୀଙ୍କୁ ଲେଖିଥିଲେ । ସବୁ ପାଇକ ଏବଂ ସେମାନଙ୍କର ନେତା ଦଳେଇ ଦଳବେହେରା କେବଳ ପିଣ୍ଡିକ ବାହୁବଳେନ୍ଦ୍ର, ଗୋପାଳ ଛୋଟରା ଓ ପଦ୍ମଲଭ ଛୋଟରାଙ୍କ ବ୍ୟତୀତ ଅନ୍ୟମାନଙ୍କୁ ରାଜକ୍ଷମା ଦିଆଗଲା ।
ପିଣ୍ଡିକଙ୍କ ଗହଣରେ ୧-ମଧୁ ମହାନ୍ତି, ୨-ବିଷ୍ଣୁ ମହାନ୍ତି, ୩-ସାଧୁଚରଣ ମଙ୍ଗରାଜ ୪-ବିଷ୍ଣୁ ପାଇକରା—୫ ଧ୍ରୁବ ଜେନା ଥିଲେ :—

In anather report of Joint Magistrate of Khurda informed the Commissioner of the attempt made to capture Pindik Bahubalendra who was regards as one of the ring leader of the rebles. Pindik how ever manage to escape but three of his followers Sadhu Mangaraj

2—Bishnu Paikara and Dhruba Jena were captured two rebles Madhu Mahanty and Bishnu Mahanty who had surrendered themselves readered much help in the capture of rebels. So they are reco-

mmended for grant of full pardon and smitable rewards He also requested for sanction of Rs. 1000-00 as reward for Capture of Pindik.

(Forester to Ker Dated 30-9-1818 (O. S A. Vol 45) Guide to Orissian record Vol III Page 34)

ଖୁରଧା ଜଏଣ୍ଟ ମାଜିଷ୍ଟ୍ରେଟ ଫରେଷ୍ଟର କମିଶନରଙ୍କୁ ଜଣାଇଲେ ଯେ ପିଣ୍ଡିକ ବାହୁବଳେନ୍ଦ୍ର ଜଣେ ମୁଖ୍ୟ ବିଦ୍ରୋହୀ ଥାଇ ଯେବାଷ୍ଠ କରିବା ସମୟେ ଖସିଯିବାକୁ ଉଦ୍ୟମ କଲେ ତାଙ୍କ ସହଯୋଗି ସାଧୁ ମଙ୍ଗରାଜ, ବିଷ୍ଣୁ ପାଇକରାୟ ଧ୍ରୁବ ଜେନା ଧରାହେଲେ ଆଉ ଦୁଇଜଣ ବିଦ୍ରୋହୀ ମଧୁ ମହାନ୍ତି ଓ ବିନ୍ଧ୍ୟୁ ମହାନ୍ତି ସ୍ୱଇଚ୍ଛାରେ ଆତ୍ମସମର୍ପଣ କରି ଏମାନଙ୍କୁ ଧରାଇ ଦେବାରେ ଯଥେଷ୍ଟ ସାହାଯ୍ୟ କରିଅଛନ୍ତି ଓ ପିଣ୍ଡିକଙ୍କୁ ଧରାଇ ଦେଇଥିବା ହେତୁ ଏହାଙ୍କୁ ରାଜକ୍ଷମା ଦିଆଯାଇ ଟ୧୦୦୦-୦୦ଙ୍କା ପୁରସ୍କାର ଦିଆଯାଉ ।

ଯାହେଉ ପିଣ୍ଡିକ ମଲିପଡ଼ାଠାରେ ଧରାହେଲେ । ଧ୍ରୁବଜସ୍ତ ତ୍ରବଲ ବ୍ରିଟିଶ ଫୌଜର ବିରୋଧାଚରଣ କରି ନଥିବାରୁ ଏହାଙ୍କୁ ନିର୍ଦ୍ଧାରିତ ଜମାରେ ପୂର୍ବରୁ ଥିବା ଜମିଦାରୀକୁ ସ୍ଥାୟୀ କରାଗଲା । ଗଭର୍ଣ୍ଣର ଜେନେରାଲ ଏ ମର୍ମରେ ସନନ୍ଦ ପ୍ରଦାନ କଲେ ।

ବାସୁଦେବ :—

ଏ ଜଣେ ଭଦ୍ର ପରାକ୍ରମଶାଳୀ ସଂଗଠକ ଚତୁର ଶାସକ ଥିଲେ । ଗଜପତିଙ୍କ ଅନୁକରଣରେ ପୂର୍ବେ ଏ କ୍ଷୁଦ୍ର ରାଜ୍ୟରେ ଦେବତା ବ୍ରାହ୍ମଣଙ୍କୁ ଦିଆଯାଇଥିବା ଦାନ, ଦେବୋତ୍ତର, ଅମୃତ ମଣୋହି ୧୧ଗୁଣ୍ଠ ୯ ବିଶ୍ୱା ଜମିକୁ ବ୍ରିଟିଶ କର୍ତ୍ତୃପକ୍ଷଙ୍କଠାରେ ଦାବୀ ଉପସ୍ଥାପନା କରି ରେଭିନ୍ୟୁ କମିଶନରଙ୍କଠାରୁ ରେବକାସ୍ତ ତା ୨୫-୩-୧୮୪୩ ଖରେ ହାସଲ କରିଥିଲେ ।

ଏ କୌଣସି କାର୍ଯ୍ୟରେ ଅନକୂଳକରି ବାହାରିଲେ ଇଷ୍ଟଦେବୀ ଗ୍ରାମଦେବତୀଙ୍କ ଠାରୁ ଫୁଲ ଖସୁ ନଥିଲେ ଯାଉ ନଥିଲେ ।

ମଧୁସୂଦନ :—

ମଲିପଡ଼ା ଗଡ଼ର ଦାନ ଦେବୋତ୍ତର ଜମିପାଇଁ ପିତା ବାସୁଦେବ ଯେଉଁ ଆବେଦନ କରିଥିଲେ ଏହାଙ୍କ ଅମଳରେ ତାହା ଫଏସଲ ହୋଇ ସେବକାସ୍ତ

ମିଳିଥିଲା । ଏ ଜଣେ ଅହଂଭିମାନୀ ଶାସକ ଥାଇ ଏଠାରେ ଥିବା ସରଦାର ବଂଶ ଅବାଧ ହେବାରୁ ଏହାଙ୍କୁ ଏଠାରୁ ବାହାର କରି ଦେଇଥିଲେ । ସେମାନେ ଯାଁଲା ଗ୍ରାମକୁ ଯାଇ ଜଗଦେବ ଉପାଧି ଧାରଣ କରି ସେଠାରେ ବସବାସ କରୁ ଅଛନ୍ତି । ଏହାଙ୍କ ଭାଇ ବନ୍ଧୁକରେ ଜଣେ ଗଉଡ଼ର ମଇଁଷିକୁ ଭୁଲବଶତଃ ମାରିଦେବାରୁ ଏ ବେଢେବରକୁ ହାତଧରି ଉଠାଇ ଦେଇଥିବାରୁ ସେ ହାତରେ ଅନ୍ନ ଭୋଜନ କରିବାକୁ ନାସ୍ତି କରିବାରୁ ଏହାଙ୍କ ଆଦେଶରେ ନାଲୁ ପଣ୍ଡା ଗଉଡ଼ର ଡାହାଣ ହାତ ହାଣି ଆଣି ଦେବାରୁ ଭୋଜନ କରିଥିଲେ । ଏହାଙ୍କର ମାତ୍ର ୩୨ ବର୍ଷ ବୟସରେ ମୃତ୍ୟୁ ହୋଇଥିଲା । ଏହାଙ୍କ ଅମଳରେ କେତେକ ଗ୍ରାମରୁ ଆଗନ୍ତୁକମାନଙ୍କୁ ଆଣି ବୃତ୍ତି ବାଢ଼ି ବସ୍ତି ଗ୍ରାମରେ ରଖାଇଥିଲେ ।

ବୀରବର : –

ଏ ସୁବୁଦ୍ଧିରୂପେ ରାଜ୍ୟ ପରିଚାଳନା କରି ରାଜ୍ୟର ଉତ୍ତର ତରଫରୁ ବ୍ରିଟିଶ ସରକାର ଦଖଲକରି ନେଇଥିବା କେତେକ ଜମି ମୋକଦମାକରି ବ୍ରିଟିଶ କର୍ତ୍ତୃପକ୍ଷଙ୍କଠାରୁ ପୁନଃ ଦଖଲ ନେଇଥିଲେ । ରାଜ୍ୟରେ ବୃକ୍ଷରୋପଣ କରାଇ ମଲ୍ଲପଡ଼ା ଗଡ଼ରେ ୬ଟି ଗିଡ (୧୦୦୦ରୁ ଅଧିକ ଆମ୍ବଗଛ ଥିବା ବଗିଚାକୁ ଗିଡ ବୁହନ୍ତି) କରିଥିଲେ । ୫୨ ବର୍ଷ ବୟସରେ ହାଇଜା ରୋଗରେ ଏହାଙ୍କ ମୃତ୍ୟୁ ହୋଇଥିଲା । ଏହାଙ୍କ ରାଜତ୍ୱରେ ବିଭିନ୍ନ ଗ୍ରାମରୁ ଅନେକ ଆଗନ୍ତୁକମାନଙ୍କୁ ଆଣି ରଖାଇଥିଲେ ।

ମଦନ ମୋହନ :—

ଏ ଜଣେ ସୁଗାୟକ ସଙ୍ଗୀତପ୍ରିୟ ଓ ବଳଦପ୍ରିୟ ଥାଇ କେବଳ ଆମୋଦ ପ୍ରମୋଦରେ ସମୟ ଅତିବାହିତ କରିଥିବାରୁ ନିଜ ଭାଇମାନେ ଯଥାକ୍ରମେ ଦୈତାରି (ଡାଲଯୋଡା), ରାଧାମୋହନ (କୁଆପଛି) ସରବରାକାରକୁ ପୋଷ୍ୟପୁତ୍ର ରୂପେ ପାଇଥିଲେ । ଦୁର୍ଯ୍ୟୋଧନ, କାମଦେବ ଯଥାକ୍ରମେ ଭଗବତ, ନରେନ୍ଦ୍ର ପୋଷ୍ୟପୁତ୍ର ଓ ଘଣ୍ଟାପାଟଣାକୁ କାମଦେବ, ହରିଚନ୍ଦନ, କାହ୍ନୁଚରଣ କାନୁନଗୋଙ୍କ ଘରଜ୍ୱାଇଁ ହୋଇ ଯାଇଥିବାରୁ ଭାଇମାନେ ସହକ ହୋଇ ରାଜସ୍ୱ ଆଦି ଦାଖଲ ନଦେବାରୁ ଏମାନଙ୍କପାଇଁ ନିଜମା'ଙ୍କ ପରାମର୍ଶରେ ବିଭିନ୍ନମହାଜନଙ୍କ ଠାରୁ ଋଣକରିଥିଲେ । ଜୀବନମଧ୍ୟ ୨।୪ବର୍ଷ କାଳ ପକ୍ଷାଘାତ ରୋଗାକ୍ରାନ୍ତ ହୋଇ ଗୁମାସ୍ତାମାନଙ୍କ ଜରିଆରେ ରାଜ୍ୟ ଶାସନ କରିଥିଲେ ।

ଜିଦ୍‌ଖୋର ପଣିଆ ଓ ଜାତିର ଟେକ ପର ନିର୍ଭରଶୀଳତା ହେତୁ ଶେଷ ଜୀବନରେ ଦେଣା ଆଦି ଦ୍ୱାରା ସର୍ବହରା ହୋଇଥିଲେ । ଏହାଙ୍କର ଅଧିକାଂଶ

ଆସ୍ତ ସଙ୍କିତ ପିଲ ଓ ଭଲ ବଳଦ କରିବାରେ ବ୍ୟସ୍ତିତ୍ୱ ହେଉଥିଲ ! ଏ ବଂଷର୍ ବୟସରେ ନୂଆଗାଁରୁ ଆସୁଥିବା ସମସ୍ତ ଜୋରଠାରେ ବାଡ ମାରିବାରୁ ଗାଧେଇବା ସମୟରେ ତା ୫-୧-୧୯୧୮ ମସିହା ମାଘ କୃଷ୍ଣ ନବମୀରେ ମୃତ୍ୟୁ ମୁଖରେ ପଡ଼ିଥିଲେ ।

ମଦନ ମୋହନଙ୍କ ଭାଗ୍ୟର ବିଡ଼ମ୍ବନା :—

ଗଜପତିଙ୍କ ପ୍ରଦତ୍ତ ଭିଡ଼ିଖଣ୍ଡା(ଟେଲ ହଳଦୀ)ଜମି ଗଦାଧର ହରିଚନ୍ଦନଙ୍କ ସମୟରୁ ରାଣୀମାନଙ୍କ ନାମେ ରେକର୍ଡ ହୋଇ ଆସୁଥିଲ । ଏହାଙ୍କ ସମୟରେ ବନ୍ଦୋବସ୍ତ ସମୟେ "ଆମ୍ଭ ସ୍ତ୍ରୀମାନଙ୍କ ନାମ ହାକିମ ଜାଣିବେ" ଭାବି ନିଜ ନାମେ ଏ ଲଖରାଜ ଜମି ରେକର୍ଡ଼ କରାଇଲେ । ଏହାଙ୍କ ନାମେ ରେକର୍ଡ ହେବାରୁ ଭାଇମାନେ ଭାଗ ନେବାକୁ ନ ମ୍ବର କେଶ ବନ୍ଦୋବସ୍ତ ହାକିମଙ୍କ ପାଖେ ଆପତ୍ତି କଲେ । ବନ୍ଦୋବସ୍ତ ହାକିମ ନୃପେନ୍ଦ୍ର ନାଥ ରାୟ ଭାଇ ରାମକୃଷ୍ଣ ନଟବର ଶ୍ରୀମନ୍ତ ସୁବଳ ନରେନ୍ଦ୍ର, କୃଷ୍ଣବହାରୀ ପ୍ରେଟରା ଓଗେର ଆପତ୍ତିକାରୀ ଥିଲେ । ମାତ୍ର ଏମାନଙ୍କ ଦାବୀ ଅଗ୍ରାହ୍ୟ ହେଲ । ଏ ମୋକଦମାରେ ଭାଇମାନେ ଖୋରାକ ପୋଷାକ ସ୍ୱରୂପ ପାଇଥିବା ଜମି ସବୁ ବନ୍ଧକ କରି ଖର୍ଚ୍ଚ କରି ଶେଷରେ ଫେଲ ହେଲେ । ଦୁର୍ଯ୍ୟୋଧନ ହରିଚନ୍ଦନ ସରକାରୀ ଜଙ୍ଗଲର କାଠ ଅଣି ଧରା ହେବାରୁ ତାଙ୍କୁ ଗିରଫ ନକରିବା ପାଇଁ ଲାଞ୍ଚ ୨୦ ଟଙ୍କା ଏବଂ ମଳିପଡ଼ା ଇଷ୍ଟେଟର ଜଙ୍ଗଲ ରେଞ୍ଜର ଗୋପାଳଙ୍କୁ ପାରିତୋଷିକ ଦିଅଗଲା । ଏ ଟଙ୍କା ପରିଶୋଧ ନକରିବାରୁ ତା ୨୭-୧-୧୯୦୭ରେ ମଦନ ମୋହନ ନିଜ ସଙ୍କିତ ମେଲସହ ଖଣ୍ଡଗିରି ଯାତ୍ରାକୁ ଯାଇଥିବା ସମୟେ ଏହାଙ୍କ ମାମୁଁ ଶାମ ଚୌଧୁରୀ (କପଟି) ଗୁମାସ୍ତା ଥାଇ ଗାଁର କେତେକ ଜମିଦାର ବିରୋଧି ଲୋକଙ୍କୁ ମନ୍ତ୍ରଣାରେ ମହାଜନ ମୁଣ୍ଡମୁହାଣ ନିବାସୀ ଗୋପାଳ ସାମନ୍ତରାଙ୍କ ଠାରୁ ୩୦ ଟଙ୍କା ଲାଞ୍ଚ ନେଇ ଗିରଫଦାରୀ ପରୱାନା ଅଦାଲତରୁ ଅଣିଥିବା ପିଅନଙ୍କୁ ଖଣ୍ଡଗିରିଠାରେ ଗିରଫ କରିବାକୁ ପହଁଚିବାରେ ମୂର୍ଚ୍ଛାର ଅନକୂଳ ହେଉଥିବା ହେଉଥିବା ବରକୋଲି, କୁଅତରା ଓ ମଳିପଡ଼ା ଜୋରଠାରେ ଥିବା ଜମି ଖଣ୍ଡଗିରିରୁ ଖୋରଧା ଯାଇ ଗୋପାଳ ସାମନ୍ତରାଙ୍କୁ ବନ୍ଧକ କରି ଆସି ମନସ୍ତାପରେ ପକ୍ଷାଘାତ ରୋଗଗ୍ରସ୍ତ ହେଲେ ।

—୦—

ଏଥିପୂର୍ବେ ନୂଆପଲ୍ଲୀ ପୋଷ୍ୟପୁତ୍ର ହୋଇ ଯାଇଥିବା ରାଧାମୋହନ ନିଜଙ୍କ କୁଶିକ୍ଷାରେ ପଡ଼ି ଗଞ୍ଜେଇ ଅଫିମ ଖାଇ ସରକାରୀ ରାଜସ୍ୱ ନଦେବାରୁ ଏହାଙ୍କ

ପାଇ କଟକ ସାନ୍ତସାହି ଗଦେଇ ସେନାପତିଠାରୁ କରଜକରି ଯାଜ୍ଜପୁର ମୌଜାର ୬ ବାଟୀ ୮ ମାଣ ଜମି ବନ୍ଧକ ଦେଇଥିଲେ । ପ୍ରଜାମାନେ ବସ୍ତୁରକରି ୧୪୦୦ ଟଙ୍କା ଅଗ୍ରିମନେଇ ଏ ଜମି ମୁକୁଲାଇବାପାଇଁ ଦେବାରୁ ମଦନ ମୋହନ କଟକଯାଇ କୌଣସି ଉପିଦନଆଣି ମାତ୍ର ବାକିଥିବା ୬୦ଟଙ୍କା । ହିସାବକରି ନକଲ ଓ୍ୱାପସ ଆଣିଲେ ନାହିଁ । ଗଦେଇ ଜଣେ ଧପାବାଜ ମାମଲବାଦ ଲୋକଥାଇ କବଲ ନେଲେ ପଟିଆ ବନମାଲି ରାଏଙ୍କଠୁ ଆଣିଥିବା ଟଙ୍କାପାଇଁ ସେ ଜମି ନିଲମ ନେଲେ ମୁଁ ମୁଖ୍ୟାଏମ ହେବ କହିବାରୁ ଏ ଆଉ କବଲ ଆଣିନଥିଲେ । ପରେ ବନମାଲି ରାଏ ଜମି ନିଲାମ ଉଠାଇବାରୁ ପ୍ରକୃତପକ୍ଷେ ଗଦେଇ ସେନାପତି କୋର୍ଟରେ ମୁଖ୍ୟାସ୍ତମ ହୋଇ ଜମି ରକ୍ଷାକଲେ ଓ ତାଙ୍କୁ ୧ ବାଟୀ ଜମି ପୁରସ୍କାର ଦେବାକୁ ଦାବୀକଲେ । ଜମିଦାର ୧୦ ମାଣ ଦେବାକୁ ରାଜି ହୋଇଥିଲେ ମାତ୍ର ପରାଜିତ ଭାଇଆ ଓ ସୁଦର୍ଶନ ଦାସ, ଢଗମ୍ପୁର ଶ୍ରୀ ଚନ୍ଦନଙ୍କ କୁ ପରାମର୍ଶରେ ଗଦେଇକୁ ଜମି ନ ଦେଇ ଭାଇମାନଙ୍କ ନାମେ ଜମି ରେକର୍ଡ କରଦେଲେ । ଗଦେଇ ଜମି ପାଇପାରବ ନାହିଁ ବୋଲି ପରାମର୍ଶ ଦେବାରୁ ଓ ଭାଇମାନେ ଅସତ୍ୟ କରିବା ପାଇଁ ଶାଲଗ୍ରାମଛୁଇଁ ଶପଥ କରିବାରୁ ଜମିଦାର ଭାଇମାନଙ୍କ ନାମ ଜମିରେ ସାମିଲ ହେବାପାଇଁ ମଞ୍ଜୁର ଦେଲେ । ଜମି ରେକର୍ଡ ହେବା ପରେ ଗଦେଇ ସେନାପତି ନାମେ ଆପତ୍ତି ଦରଖାସ୍ତ ଦେବା ପରବର୍ତ୍ତେ ଗଦେଇ ସେନାପତିକୁ ସାହାଯ୍ୟ ଦେଇ ଜମି ନିଲମ କରାଇ ଗଦେଇ ୪୨ ମାଣ ଓକିଲ ରାସ ବହାରୀ ମିଶ୍ର ୧୫ ମାଣ ଢଗମ୍ପୁର ଶ୍ରୀଚନ୍ଦନ ନିଜକୁ ପରାମର୍ଶ ପାଇଁ ୧୦ମାଣ ମୁଖ୍ୟ ଉଦ୍ୟୋକ୍ତାଥିବା ଭାଇ ସୁବଲ ସହଦେବ ସେମାନଙ୍କ ସ୍ତ୍ରୀ ପୁନା ଦେଇ ଓ ହେମ ଦେଇଙ୍କ ନାମେ ୧୫ ମାଣ ଜମି ଅନ୍ୟ ଭାଇମାନଙ୍କଠାରୁ ଚଞ୍ଚଲ ବକୀ କବଲ କରି ଜମିଦାରଙ୍କୁ ଜମିରୁ ଉଚ୍ଛେଦ କଲେ । ମାତ୍ର କେତେବର୍ଷ ପରେ ଅବସ୍ଥାଚକ୍ରରେ ପଡ଼ି ଭାଇଆ ଓ ଓକିଲଙ୍କ ଜମି ଅନ୍ୟକୁ ଜରା ମୂଲ୍ୟରେ ଘରା ବକି କଲେ ।

ମଦନ ମୋହନ ନିଜର ସରଳ ବିଶ୍ୱାସ ଓ ଦାତବୁଦ୍ଧିଆ ପଣ୍ଟୁ ଶେଷ ଜୀବନରେ ଦାରୁଣ ମନସ୍ତାପ ଘୋରଅର୍ଥିକ ଦୁର୍ଗତିରେ ପଡ଼ି ୧୦ ବର୍ଷ ପକ୍ଷାଘାତ ରୋଗାକ୍ରାନ୍ତ ହୋଇ ୬୪ ବର୍ଷ ବୟସରେ ପ୍ରାଣତ୍ୟାଗ କଲେ ।

ହରେକୃଷ୍ଣଙ୍କ ରାଜତ୍ୱ ସମୟର ଘଟଣାବଳୀ :—

ଜନ୍ମ ଶୁକ୍ରବାର ତା ୨୯-୬-୧୯୦୦ ଶ୍ରୀଗୁଣ୍ଡିଚ୍ଚ ମୃତ୍ୟୁ ବୁଧବାର ତା ୨୨-୧୨-୮୦

ଏ ନାବାଳକ ଥିବା ଅବସ୍ଥାରେ ପିତାଙ୍କ ମୃତ୍ୟୁ ହେବାରୁ ଏହାଙ୍କ ମାମୁଁ ଶ୍ରୀ ବାଞ୍ଛାନିଧି ମହାନ୍ତି, ସା-ବ୍ରାହ୍ମଣ ସାଇଲୋ, ଜି-କଟକ । ତାଙ୍କ ଗ୍ରାମରୁ ଆସି ନିଜ ଜୀବନ ଧନ ବିପନ୍ନ କରି ଦୁର୍ଯ୍ୟୋଧନ ହରିଚନ୍ଦନ ଜମିଦାରଙ୍କରୁ ଭାଗ ନେବା

ପାଇଁ କରିଥିବା କେଶ ଓ ଇଷ୍ଟେଟର ଚରମ ପତନ ସମୟେ କ୍ଷମତାପନ୍ନ ନେଇ ଜମିଦାରୀ ବୃଝା ଶୁଝା ଓ ମାଲିମୋକଦମା ପରିଚାଳନା କଲେ । ନିଜର ଗ୍ରାମ ଜମି ବନ୍ଦ ୬୦ ବର୍ଷ କାଳ ଏଠାର ଜମିଦାରୀ ରକ୍ଷାକଲେ । ଦୁର୍ଯୋଧନ ହରିଚନ୍ଦନଙ୍କ ଉପରେ ସବ୍‌ଜଜ ମୋକଦମା ଦ୍ୱଚ୍ଛି ୮୬ ଟଙ୍କା ଡ଼ିକ୍ରି ଦେଇ ଥିବାରୁ ଏ ଡ଼ିକ୍ରୀଦାରୀ ପାଇଁ ଦୁର୍ଯୋଧନଙ୍କ ଘର ନିଲାମ ପାଇଁ ସିଭିଲ କୋର୍ଟ ପିଅନ ଆସିବାରେ ମାମୁଁଙ୍କ ଇଚ୍ଛା ବିରୁଦ୍ଧରେ ଏ ଦୁର୍ଯୋଧନଙ୍କୁ ବିନା ଟଙ୍କା ଆଦାନ ପ୍ରଦାନରେ ସମସ୍ତ ଟଙ୍କାର ପ୍ରାପ୍ତି ସ୍ୱୀକୃତ ରସିଦ ଲେଖି ଦେବାରୁ ବାଞ୍ଛାନିଧି ମଲ୍ଲପଡ଼ାରୁ ଯାଇ ଶେଷ ଜୀବନ ୧୯୬୪ ମସିହା ପର୍ଯ୍ୟନ୍ତ ନୁଆଗାଁରେ ଘରକରି ରହିଲେ । ଏହାଙ୍କ ଅମଳରେ ୬୪-୮-୧୯୫୩ ମସିହା ଜମିଦାରୀ ଉଠିବା ପର୍ଯ୍ୟନ୍ତ ପ୍ରଜା ଭାଇଆମାନଙ୍କ ସହ ସହ ମୋକଦମା ହୋଇ ଅଜସ୍ର ଅର୍ଥବ୍ୟୟ ଓ ଅନାଟନ ଲାଗିରହିଥିଲା ।

ମାତ୍ର ୧୮ ବର୍ଷ ବୟସରେ ମାଟ୍ରିକ ୧୦ମ ଶ୍ରେଣୀରୁ ପଢ଼ା ବନ୍ଦକରି ପିତାଙ୍କ ମୃତ୍ୟୁ ହେବାରୁ ଗ୍ରାମକୁ ଆସି ଜମିଦାରୀ ପରିଚାଳନା କଲେ । ପଢ଼ିବା ସମୟେ ଶ୍ରୀ ସୁବାସ ଚନ୍ଦ୍ର ବୋଷ ଶତମିତ୍ର ଏହାଙ୍କ ସାହାଧ୍ୟାୟୀ ଥିଲେ । ଶାରୀରିକ ଶ୍ରମ କରିବା ପାଇଁ ବିମୁଖ ଥିଲେ ହେଁ ପ୍ରବଳ ଜ୍ଞାନ ଲିପ୍‌ସା ଅଧ୍ୟବସାୟ ବଳରେ ସାହିତ୍ୟ ଅଙ୍କ ଆଦିରେ ପାରଙ୍ଗମତା ଲାଭକରି ଶ୍ରେଣୀରେ ୧ମ ହେଉଥିଲେ ଓ ୮ମ ଶ୍ରେଣୀରୁ ଡବଲ ପ୍ରମୋଶନ ପାଇଁ ଦଶମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥିଲେ । ତୁଳସୀ ଦୁଇପତ୍ରରୁ ବାସିବାପରି ନିଜର ଅଧ୍ୟବସାୟ ବଳରେ ସାହିତ୍ୟ ଜ୍ୟୋତିଷ ଆଦିରେ ଶୀର୍ଷକାଳ ଅର୍ଜନ କରିଥିଲେ । ନିଜର ମୃତ୍ୟୁ ଦିନ ସ୍ଥିରକରିଗ୍ରହ ମହାଦଶା, ରାହୁ ଅନ୍ତର ଓ ବୁଧ ପ୍ରତ୍ୟନ୍ତର ଦଶାରେ ତା ୬୪-୧୬-୮୦ରେ ମୃତ୍ୟୁ ହେବ ବୋଲି ସ୍ୱହସ୍ତରେ ଉଲ୍ଲେଖ କରି ଯାଇଅଛନ୍ତି । ୬୦ ବର୍ଷ ବୟସରୁ ଖୋରଧା ସବ୍‌ଡିଭିଜନର ବଡ଼ ବଡ଼ ନ୍ୟାୟ ନିଶାପ ଯାନ୍ତ ଯାତ୍ରା ଠାକୁରଙ୍କ ପର୍ବ ପର୍ବାଣୀରେ ଜଣେ ସୁଦକ୍ଷ ବ୍ୟବସ୍ଥାପକ ଓ ନ୍ୟାୟପତିଭାବେ ପରିଚିତ ଥିଲେ ।

ବିବାହ, ବ୍ରତ ଓ ଅନ୍ୟାନ୍ୟ ଶାସ୍ତ୍ରୀୟ ଜଟିଳ ବ୍ୟବସ୍ଥାର ମୀମାଂସା ନେବାକୁ ଅନେକ ପଣ୍ଡିତ ବ୍ରାହ୍ମଣ ତାଙ୍କ ନିକଟକୁ ଆସୁଥିଲେ । ପାଲି, ଦଣ୍ଡନାଚ ଆଦିର ଗାୟକଗଣ ଗୀତ ନେବାକୁ ମଧ୍ୟ ଆସୁଥିଲେ । ତାଙ୍କର ରଚନା ଶୈଳୀ ଅନ୍ୟାନ୍ୟ ସାଧାରଣ ତଥା ଶବ୍ଦଯୁଗ ଶୈଳୀ ରଚନା ତାଙ୍କୁ ଅନେକ କ୍ଷେତ୍ରରେ ଶୀର୍ଷାସନ ପ୍ରଦାନ କରିଥିଲା ।

ଦିନ ରାତି ଜ୍ୟୋତିଷ ଓ ସାହିତ୍ୟ ସାଧନା ହେତୁ ବାମ ଚକ୍ଷୁରୁ ଦୃଷ୍ଟିଶକ୍ତି ହରାଇଥିଲେ । ପ୍ରାଚୀନ କବି ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, ଯଦୁମଣି, ବଳଦେବ ରଥ, ମାଘ, କାଳିଦାସ ଭଳି ଆଦି କବିଙ୍କ ଶ୍ଲୋକ, ଛାନ୍ଦ ଆଦି ତାଙ୍କର ମୁଖସ୍ଥ ଥିଲା । ଜ୍ୟୋତିଷ ଜ୍ଞାନ ହେତୁ ଅନେକ ବଡ଼ ବଡ଼ ଅଫିସର ଓ ସ୍ଥାନୀୟ ଲୋକ କୋଷ୍ଠି ବିଚାର ପାଇଁ ପ୍ରାୟ ପ୍ରତ୍ୟହ ଆସୁଥିଲେ । ପ୍ରଗାଢ଼ ପାଣ୍ଡିତ୍ୟ ଓ ସ୍ମରଣ-ଶକ୍ତି ଓ ପ୍ରତ୍ୟୁପନ୍ନ ମତି ହେତୁ ସ୍ଥାନୀୟ ଲୋକେ 'କାଳୁବାବୁ' (କାଳିଦାସ ବୋଲି ଡାକୁଥିଲେ ।

ଅତ୍ୟଧିକ ପାନ, ଗୁଣ୍ଡି ଖାଇବା ହେତୁ ଜିଭରେ ବିସ୍ଫୋଟକ ବାହାରି କାନସର ହେବାରେ ୮୧ ବର୍ଷ ବୟସରେ ତା.୨୪-୧୨-୮୦ ବୁଧବାର ରାତି ୮ଟା ସମୟରେ ସ୍ୱର୍ଗାରୋହଣ କଲେ ।



ରେକର୍ଡ଼ର ଅର୍ଥ—ମକଦମା ସମ୍ବନ୍ଧୀୟ ସମସ୍ତ ତଥ୍ୟ ଓ
ଅଦାଲତଙ୍କ ମୀମାଂସାର ସାରାଂଶ ମୋହରଯୁକ୍ତ ସ୍ୱାକ୍ଷର
(ଛମାଣ ଆଠଗୁଣ୍ଠ ପୃ ୧୪୯ଷ୍ଠା ଦେଖନ୍ତୁ)

Court fee Rupees one        Settlement of Khurdha 1877

| ଡ଼େପୋଟୀ କଲେକ୍ଟର ନମ୍ବର | | ଜେନରଲ ରେଜିଷ୍ଟର ନମ୍ବର | | | |
|---|---|---|---|---|---|
| ୬୧୩ | ୬୦୬ | ୫୮୨ | ୬୦୨ | ୬୧୬ | ୬୨୧ |
| ୫୯୭ | ୬୦୭ | ୫୯୦ | ୬୧୭ | ୬୧୧ | ୫୮୭ |
| ୫୯୮ | ୬୦୮ | ୫୯୮ | ୬୮୬ | ୬୦୯ | ୫୮୫ |
| ୫୯୯ | ୬୦୯ | ୬୦୩ | ୬୯୫ | ୫୯୬ | ୫୯୯ |
| ୬୦୦ | ୬୧୦ | ୬୦୭ | ୬୧୩ | ୬୨୫ | ୬୧୨ |
| ୬୦୧ | ୬୧୧ | ୬୧୦ | ୫୯୩ | ୫୮୪ | ୬୦୪ |
| ୬୦୨ | ୬୧୨ | ୬୧୮ | ୬୦୫ | ୫୮୯ | ୫୯୧ |
| ୬୦୩ | ୬୩୧ | ୬୦୮ | ୫୮୮ | ୬୦୬ | ୬୧୯ |
| ୬୦୪ | ୬୩୨ | ୬୧୪ | ୫୯୬ | ୫୯୪ | ୫୮୩ |
| ୬୦୫ | ୬୩୩ | | ୬୦୦ | ୬୦୧ | ୫୯୨ |
| ୬୩୪ | | | | | ୬୨୦ |

ରେକର୍ଡ଼ର କଚେରୀ କଲେକ୍ଟରୀ ।କା କଟକ । ଜ, କଟକ ଏକ୍ସିଷ୍ଟାଣ୍ଟ ସାବ ମଧୁସୂଦନ ପଟ୍ଟନାୟକ ବାହାଦୁର ଡ଼େପୋଟି କଲେକ୍ଟର । କା । ଖୋର୍ଦ୍ଧା ଓଗେର ତା ୧୬ ଶେଷ ମାହେ ନବମ୍ବ ସ୍ନ ୧୮୪୧ ମସିହା ।

ସରକାର ବାହାଦୁର—ମୁଦେଇ

ବନାମ

ବାସୁଦେବ ଶ୍ରେଷ୍ଠଗସ୍ତ ହାଲ ଦଖଲକାର ମଧୁସୂଦନ ହରିଚନ୍ଦନ ଖଣ୍ଡାଏତ ସା-ଗଡ଼ମଲ୍ଲିପଡ଼ା, ଜ, ଦାଣ୍ଡିମାଳ ଓ କେଲା ବାଶକ ପେସର ଜଗା ବାବକ ମୁତୋଫା ସେବାୟତ ଶ୍ରୀ ଦୁର୍ଗାଣୀ ଠାକୁରାଣୀ । ସା-ଏ ଜନ କେଶବ ଦାଶ ଅଧିକାରୀ ସା-ମୌ ସାମପୁର ଓ ମଧୁଦାସ ସା-ଜନଗଡ଼ ମଳପଡ଼ା ଓ ବାସୁରଥ ପେସର ମାଗୁଣୀ ପ୍ରଧାନ । ସା-ମୌ ତମାଣ୍ଡୋ । ଜ । ମଜକୁର ଓ ପିଣ୍ଡିକ

ମହାପାତ୍ର ବରଦର ପଣମି ପଣ୍ଡା ମୁତୋଫା ସେବାସ୍ତ ଶ୍ରୀ ବିଶ୍ୱେଶ୍ୱର ଦେବ, ସା-ମୌ ଗୋଠପାଟଣା ।ଭା ଗ, ମଜକୁର ଓ ଗୃଜବ ଦାସ ମୁତୋଫା ଚେଲା ସନାତନ ଦାସ, ସା: ମୌ ନୁଆଗାଁ ।ଭା ଗ, ମଜକୁର ଓ ଗୋବିନ୍ଦ ରଥ ବରଦର୍ ଫକିର ରଥ ମୁତୋଫା । ସା: ମୌ ଘାଟିକିଆ ଓ ପିଣ୍ଡିକ ମହାପାତ୍ର ବରଦର ପଣମି ପଣ୍ଡା ମୁତୋଫା ସେବାଏତ ଶ୍ରୀ ବାଲୁକେଶ୍ୱର ଦେବ ସା·ମୌ-ଗୋଠପାଟଣା ଓ ହରବଂଶ ପୁଷ୍ଟି ମୁତୋଫା ପୃଥ ମାଧବପୁଷ୍ଟି ସା-ନଜଗଡ଼ ମଲ୍ଲପଡ଼ା ଶିବ ପ୍ରହରାଜ ସା.ମୌ କାଇମାଟିଆ ଓ ମହେଶ୍ୱର ଦାସ ସା-ନଜଗଡ଼ ମଲ୍ଲପଡ଼ା ଓ ନାରଣ ପଣ୍ଡା ପେସର ରଘୁପଣ୍ଡା ମୁତୋଫା ସେବାଏତ ଶ୍ରୀ ଦଧିବାମନ ଦେବ ଓ ଆନନ୍ଦରାମ ଦାସ, ସା:ଗ ଘାଟିକିଆ ଓ କୃପାସିନ୍ଧୁ ପରମଗୁରୁ ସା.ଗ, ପାତ୍ରପଡ଼ା ଓ ବାସୁ ଦାସ ପେସର ବନ୍ଧୁ ପ୍ରହରାଜ । ଗ । ପାଟିକିଆ ଓ ନାରଣ ପଣ୍ଡା ବରଦର ଫକିର ପଣ୍ଡା ମୁତୋଫା ସେବାସ୍ତ ସା: ନଜଗଡ଼ ମଲ୍ଲପଡ଼ା ଓ ଗୋବିନ୍ଦ ପଣ୍ଡା ବରଦର ବାସୁପଣ୍ଡା ମୁତୋଫା ସେବାଏତ ବାସୁଦେବ ସା. ଭୁବନେଶ୍ୱର । କା ।ଜା ଦାଣ୍ଡିମାଳ ଓ ନାରଣ ସେବାଏତ ଶ୍ରୀ ଜଗନ୍ନାଥ ମହାପ୍ରଭୁ ପୁରୁଷୋତ୍ତମ କ୍ଷେତ୍ର ଓ ଶିବ ବଡ଼ୁ ପେସର ଦଗାଇ ବଡ଼ୁ ସେବାଏତ ଶ୍ରୀ ଲିଙ୍ଗରାଜ ମହାପ୍ରଭୁ ସା-ଭୁବନେଶ୍ୱର, ଜା । ଦାଣ୍ଡିମାଳ ରତ୍ନାକର ମଲ୍ଲିଆ ଓ ଫକିର ମଲ୍ଲିଆ ସେବାଏତ ଶ୍ରୀ କପିଳେଶ୍ୱର ଦେବ ସା: କପିଳେଶ୍ୱର ଦେବ ଜି ଦାଣ୍ଡିମାଳ······ମୁଦାଲା ।

କି ପ୍ରକାର ବୃତ୍ତି—ମୁକରରି ଜମି ଜଣ୍ଡାଏତ ଓ ଟଙ୍କିଆଣ ଦେବୋତ୍ତର ଓ ବ୍ରହ୍ମୋତ୍ତର ଓ ଲଖରାଜ ଓ ମଶୋହ୍ୱ ଓଗେର ।

ଦସ୍ତଖତ୍ୱାଲାର ନାମ—ପ୍ରବଲ ପ୍ରତାପ ମହାମହିମ ମହିମା ବସିଷ୍ଠ ନବାବ ଗଭର୍ଣ୍ଣର ଜେନେରଲ ବାହାଦୁର ସାହେବ ।

କେଉଁ ସନରେ ସନନ୍ଦ ରେଜେଷ୍ଟ୍ରି ହେଲା—ସନନ୍ଦ ରେଜେଷ୍ଟ୍ରି ହୋଇ ନାହିଁ । ମାତ୍ର ଏ ଦନାସ୍ତ ବୃତ୍ତି କଲା ମଜକୁର ସାବକ ତହସିଲ ଗୋଲାମ କାଦର ତଅଜ ସୂ.୧୨୧୩ସାଲ । ମୁ । ହୁ ୧୮୦୫ ମସିହା ଭିଆଣ ଜମାବନ୍ଦୀ କାଗଜ ଯେ ସଦରରୁ ରେଜେଷ୍ଟ୍ରି ସୂରତରେ ମଞ୍ଜୁର ଅଛୁ ତହିଁରେ ଲେଖା ହୋଇଅଛୁ ।

ମୌଜାଓ୍ୱାର ତଫସିଲ ବୃତ୍ତିର ସଂଖ୍ୟା—

| | |
|---|---|
| ଦାଣ୍ଡିମାଳ ଜିଲ୍ଲା ଇଲକା ନଜଗଡ ମହଲାରେ ଥିବା | ମା ୧୮।୨୧।୧୩ବିଶ୍ୱା |
| ପାଇକରାପୁର ମୌଜାରେ ଥିବା | ମା ୪୦।୧୨।୧୫ ,, |
| ମଧୁପୁର ,, ,, | ମା ୨।୧୨।୧୩ ,, |

| | | | |
|---|---|---|---|
| ନୂଆଗାଁ | ,, | ,, | ମା ୧୦। ୩। ୯ ,, |
| ବାଉଁଶପଟ୍ଟ | ,, | ,, | ମା ୧୮।୵ ୨।୧୫ ,, |
| ଗୋଠପାଟଣା | ,, | ,, | ମା ୭।୧୭। ୭ ,, |
| ବରପାଟଣା | ,, | ,, | ମା ୫୦।୧୯। ୮ ,, |

ମଧୁସୂଦନ ହରିଚନ୍ଦନ ମୁଦଲି । ବ୍ରା । ୯ଣ୍ଡି

ଭଉର ୯ଣ୍ଡି ନାମଧେୟ ଲୌଗଜ ବୃତ୍ତି ମା ୧୪।୮।୦।୬ବିଶ୍ୱା

ଦୁର୍ଗାପ୍ରେଣୀ ଠାକୁରାଣୀ ଟଙ୍କିଆଣ ଦେବୋଭର ମୌ-ବାଉଁଶପୁଟରେ ଥିବା ମା ୫।୭।୩ବିଶ୍ୱା ମୌ ଗୋଠପାଟଣାରେ ଥିବା ମା ୨।୧।।୨ବିଶ୍ୱା ଓ ଅଧିକାରୀ ସେବକ ଦାସ । ବ୍ରା । ଟଙ୍କିଆଣ ଖଇରତ ମୌଜେ ସାମପୁରରେ ଥିବା ମା୭।୧।୩ବିଶ୍ୱା ମୌ ବରପାଟଣାରେ ଥିବା କନ୍ଦର ଝେଏରତ ମା ୮।୨୪।୮ ବିଶ୍ୱା ଓ ମଧୁଦାସ, ବ୍ରା । ଟଙ୍କିଆଣ ବ୍ରହ୍ମତ୍ତର ନଜଗଡ଼ ମୌରେ ଥିବା ମା୪୦।୨୦।୧୧,, ଓ ବାସୁ ରଥ । ବ୍ରା ଦେବତ୍ତର ଟଙ୍କିଆଣ । ମୌଜେ ପାଇକରାପୁରରେ ଥିବା ମା୰ ୪।୧୮।୨ ବିଶ୍ୱା ଓ ପିଣ୍ଡିକ ମହାପାତ୍ର । ବ୍ରା । ଟଙ୍କିଆଣ ଦେବତ୍ତର ମୌଜେ ଗୋଠପାଟଣାରେ ଥିବା ମା୯।୮।୮ବିଶ୍ୱା ମୌଜେ ପାଇକରାପୁର ମା୪।୮।୧୩ବିଶ୍ୱା ଓ ସନାତନ ଦାସ, ବ୍ରା । ଟଙ୍କିଆଣ ଖଏରତ ମୌଜେ ନୂଆଗାଁ ମା୫।୮।୩ ,, ଓ ଗୋବିନ୍ଦ ରଥ, ବ୍ରା । ଟଙ୍କିଆଣ ବ୍ରହ୍ମତ୍ତର ନଜଗଡ ମଲାପଡ଼ାରେ ଥିବା ମା ୧।୦।୭ବିଶ୍ୱା ମୌଜେ ପାଇକରାପୁର ମା ୧।୧୦।୩ବିଶ୍ୱା ମୌ ସାମପୁର ମା ୨।୧୦।୩ବିଶ୍ୱା ମୌଜେ ଗୋଠପାଟଣା ମା ୩।୧୨।୧୫ବିଶ୍ୱା ଓ ପିଣ୍ଡିକ ମହାପାତ୍ର, ବ୍ରା । ଦେବତ୍ତର ଓ ବଲୁଙ୍କେଶ୍ୱର ମୌଜେ ଗୋଠପାଟଣା ମା୧୦।୯ ଓ ମାଧବପୁଷ୍ଟି । ବ୍ରା ଟଙ୍କିଆଣ ଦେବେତ୍ତର ମୌଜେ ବାଉଁଶପୁଟରେ ଥିବା ମା୫।୨୪।୧୪ବିଶ୍ୱା ଓ ଶିବ ପ୍ରହରାଜ ଟଙ୍କିଆଣ ଦେବୋତ୍ତର ମୌଜେ ପାଇକରାପୁର ମା ୮।୧୭।୭ବିଶ୍ୱା ଓ ମହେଶ୍ୱର ଦାସ ବ୍ରା ଟଙ୍କିଆଣ ବ୍ରହ୍ମତ୍ତର ମୌଜେ ଗୋଠପାଟଣାରେ ମା ୪।୯।୭ବିଶ୍ୱା ଓ ନାରଣ ପଣ୍ଡା, ବ୍ରା । ଟଙ୍କିଆଣ ଦେବତ୍ତର ମା ୪।୭।୭ବିଶ୍ୱା ଓ ଆନନ୍ଦରାମ ଦାସ, ବ୍ରା । ଟଙ୍କିଆଣ ୯ସ୍ତୁରତ ମୌ ନଜଗଡ଼ ମଲାପଡ଼ାରେ ଥିବା ମା ୩।୬।୧୧ ମୌ ନୂଆଗାଁରେ ଥିବା ମା୬।୧୭।୧୦ବିଶ୍ୱା ଓ କୃପାସିନ୍ଧୁ ପରମଗୁରୁ, ବ୍ରା ଟଙ୍କିଆଣ ବ୍ରହ୍ମତ୍ତର ମୌଜେ ପାଇକରାପୁରରେ ଥିବା ମା ୫।୧୩।୩ବିଶ୍ୱା ମୌଜେ ସାମପୁରରେ ଥିବା ମା ୨।୧।୮ବିଶ୍ୱା ମୌଜେ ବରପାଟଣାରେ ଥିବା ମା୫।୦।୧ବିଶ୍ୱା ଓ ଦାମ ଦାସ, ବ୍ରା ଟଙ୍କିଆଣ ବ୍ରହ୍ମତ୍ତର ମୌଜେ ନଜଗଡ଼ରେ ମା ୪।୮ଗୁଣ୍ଠ ଓ ନାରଣ ପଣ୍ଡା, ବ୍ରା । ଟଙ୍କିଆଣ ଦେବତ୍ତର ନଜଗଡ଼ ମୌଜାରେ ମା ୪।୧୮।୫ବିଶ୍ୱା ଓ ମୌଜେ ସାମପୁରରେ ଥିବା

ମା ୧।୭।୵ବିଶ୍ୱା ଓ ମୌଜେ ଗୋଠପାଟଣା ମା ୪।୵୬।୧୵ବିଶ୍ୱା । ଗୋବିନ୍ଦ ପଣ୍ଡା, ବ୍ରା । ଟଙ୍କିଆଣ ଦେବଦ୍ୱର ମୌଜେ ନୂଆଗାଁ ମା ୵।୮।୧୫ ବିଶ୍ୱା ଓ ନାରଣ ପଣ୍ଡା,ବ୍ରା । ଅମୃତ ମଣୋହୁ ମୌଜେ ପାଇକରାପୁର ଥିବା ମା୭।୧୫।୧୫ ବିଶ୍ୱା ଓ ଶିବ ବଡୁ , ବ୍ରା । ଦେବତ୍ତର ଟଙ୍କିଆଣ, ମୌଜେ ବରପାଟଣା ଥିବା ମା ୫।୧୪।୭ବିଶ୍ୱା ଓ ରତ୍ନାକର ମଲିଆ ଓଗେର ବ୍ରା, ଦେବତ୍ତର ହଜଗଡ଼ରେ ଥିବା ମା ୵।୯।୯ବିଶ୍ୱା ଓ ପାଇକରାପୁରରେ ଥିବା ମା ୵୫।୫।୮ବିଶ୍ୱା ଓ ମୌଜେ ବରପାଟଣା ମା ୭।୧୵।୮ବିଶ୍ୱା ଏରୂପ ମା ୬୬।୵।୧।୯ ବିଶ୍ୱା ।

ପୂର୍ବ ଜେନେରଲ ରେଜେଷ୍ଟ୍ରି ବନ୍ଦ ଲେଖିତ ନଂ୫୮୵୦ାରୁ ନଂ୭୧୧ମ୍ବର ପର୍ଯ୍ୟନ୍ତ ବୃତ୍ତିମାନଙ୍କ୍ ଏ ମହକୁମା ନ୵ମ୍ବରରେ ଦାଏର କରାଯାଇ କର ମୁକରରି କରିବା ସମୟରେ ଏକ ମୁଦଲ୍ ମଧୁସୂଦନ ହରିଚନ୍ଦନ ଏ ସମସ୍ତ ବୃତ୍ତି ପକ୍ଷରେ ତାହା ଗୁଜାରିବା ଦରଖାସ୍ତ ଏ କର୍ଯ୍ୟମତ କଲେକ୍ଟର ସାହେବଙ୍କ ସମୀପ ହୁକୁମ-ଦ୍ୱାରା ଏ ମହକୁମାରେ ପ୍ରବେଶ ହୋଇ ପ୦ ହେବା ସମୟରେ ତାହା ତରଫ ବେବର୍ତ୍ତୀ କମଲ ଲୋଚନ ମହାନ୍ତି ହାଜର ଆସି ତାହାଠାରେ ଥିବା କଂ ତା ସଦର ମନୁସି ପରୱାନା ଦରପେସ କରି ଏ ସଙ୍ଗେ ଦାଏର ବୃତ୍ତିର ତଦାରଖ ବୁଝିବାରେ ନକଲ ରୋବକାରି ସଙ୍ଗେ ଏ ଛ.ଲକାନଥି ଓ ସଦର ମନ୍ତୁସି ପରୱାନା ସହିତ ଗଡ଼ମଜକୁର ଇଲାକା ଲଖେରାଜ ଟଙ୍କିଆଣ ବୃତ୍ତିମାନଙ୍କର କର ମୁକରର କରିବା ଓ ନ କରିବା କମ୍ପା ପୃଥକ ପୃଥକ ନମ୍ବରରେ ମୋକଦମା ଦାଏର କରି ଲଖେରାଜ ଓ ଟଙ୍କିଦାରମାନଙ୍କ୍ ସେମାନଙ୍କ ସନନ୍ଦ ତଲବ କରି ଏ ମକଦମା ତଜବିଜ କରିବା ବିଷୟରେ ମନାସବ ହୁକୁମ ଅପେକ୍ଷାରେ ଏ କଯମତ ଓ କଲେକ୍ଟର ସାହେବଙ୍କ ହଜୁରକୁ ପ୍ରେରିତ ଓ ଇନାକା ଲଖେରାଜ ଓଗେର ମକଦମାମାନ ସେ ସନନ୍ଦ ଦୃଷ୍ଟିରେ ବାହେଲ କରି ମଜୁର ନିମନ୍ତେ ନଥିମାନ ପଠାଇବା ହୁକୁମରେ ସାହେବ ମଉସୁଫଙ୍କ ହୁକୁମ ଓ ରୋବକାରି ପୃଷ୍ଠରେ ଅଙ୍କିତ ଥାଇ ଏ ମହକୁମାରେ ତ୍ୟାପର ପ୍ରବେଶ ଓ ଜନରଲ ରେଜଷ୍ଟ୍ରି ବନ୍ଦ ଲେଖିତ ବୃତ୍ତିମାନଙ୍କ ଫର୍ଦରେ ପୃଥକ ପୃଥକ ଦାଏର ରୋବକାରି ଜାରି କରିଯାଇ ସେମାନଙ୍କଠାରୁ ଜବାବ ନିଆଯାଇ ଉକ୍ତ ଖାରଜ ନମ୍ବର ନଥି ସଙ୍ଗେ ଗଡ଼ ମଜକୁର ଖଣ୍ଡାଏତ । ବୃ । ସଦର ପରୱାନା ମୁକ୍ତ କମ୍ ଥିବା ଦୃଷ୍ଟିରେ ସେ ନଥି ସହିତ ମୋକଦମାମାନଙ୍କ କାଗଜାତ ସଙ୍ଗେ ନଥି ସାମିଲ ରେ ଲମ୍ କାଦର କାଗଜର ନକଲ ଓ ଟଙ୍କିତ୍ୟନ ତାଲିକା ସହିତ ମହାଫିସ ରିପୋର୍ଟ ସଙ୍ଗେ ଆଗତ ସମୟରେ ମଧୁସୂଦନ ହରିଚନ୍ଦନ ମୁଦଲ ଓଗେର ମଜକୁର ଦଖଲ ଗୁହାମାନଙ୍କ୍ ହାଜର ଅଣିବାରୁ ସେ ଗୁହାମାନଙ୍କ ଜମାନବନ୍ଦୀ ନିଆଯାଇ

ସେ ଗଡ଼ ଚଉହଦୀ ଓ ଓ୍ୟାକା ଫକାର ଗୁହ୍ମାମାନଙ୍କୁ ହାଜର ଆଣିବା ନିମନ୍ତେ
ଗଡ଼ ମଜକୁର ଖଣ୍ଡାଏଳ ନାମରେ ଏ ନାମାଜାରୀ ଓ ମୁଦାଲର ଉକ୍ତ ବିଷୟର
ଓ୍ୟାକଫ କାର ଗୁହ୍ମାମାନଙ୍କୁ ହାଜର ଆଣିବାରେ ସେମାନଙ୍କ ଜମାନବନ୍ଦୀ
ନିଆଯାଇ ନଥିର ସମସ୍ତ କାଗଜାତ

ନଥିବା, ନ୬୧୩ମ୍ବ ମକଦମା ଫେରସ୍ତ ସହିତ ବନ୍ଦ ୧, ବ୨, ବ୩, ବ୪, ବ୫, ବ୬, ବ୭, ବ୮, ବ୯, ବ୧୦, ବ୧୧, ବ୧୨, ବ୧୩, ବ୧୪, ବ୧୫, ବ୧୬, ବ୧୭, ବ୧୮, ବ୧୯, ବ୨୦, କ୨୦

ନଥି ନ୨୩ମ୍ବ ମକଦମା କାଗଜ ନମ୍ବ୍ରା, ସଦର ସରଓ୍ୟାନା ଫେରସ୍ତ ସାଦ ବ୨୧, ବ୨୨, ବ୨୩, ବ୨୪, ବ୨୫, ବ୨୬, ବ୨୭, ବ୨୮, ବ୨୯, ବ୩୦, ବ୩୧, ବ୩୨, ବ୩୩, ବ୩୪, ବ୩୫, ବ୩୬, ବ୩୭, ବ୩୮, ବ୩୯, କ୍ସ୧୯

ନଥିବା, ନ୫୯୭ମ୍ବ ମକଦମାର ଫେରସ୍ତ ସହିତ ବ୪୮, ବ୪୯, ବ୫୦, ବ୫୧ କ୪
ନଥି ନ୫୯୮ମ୍ବ ମକଦମାର ଫେରସ୍ତ ସହିତ ବ୪୪, ବ୪୫, ବ୪୬, ବ୪୭, କ୍ସ୪
ନ୫୯୯ମ୍ବ ମକଦମା ଫେରସ୍ତ ସହିତ ବ୪୮ ବ ୯ ବ୫୦, ବ୫୧, କ୪
ନଥି ନ୬୦୦ମ୍ବ ମକଦମା ଫେରସ୍ତ ସହିତ ବକ୨ ବ୫୩ ବ୫୪, ବ୫୫ରୁ କ୪
ନଥି ବ,୬୦୧ମ୍ବ ମକଦମା ଫେରସ୍ତ ସହିତ ବ୫୬, ବ୫୭, ବ୫୮, ବ୫୯ କ୪
ନଥି ବ,୬୦୨ ମକଦମାର ଫେରସ୍ତ ସହିତ ବ୬୦, ବ୬୧, ବ୬୨, ବ୬୩ରୁ କ୪
ନଥି ବ,୬୦୩ ମକଦମା ଫେରସ୍ତ ସହିତ ବ୬୪. ବ୬୫, ବ୬୬, ବ୬୭ କ୍ସ୪
ନଥି ବ,୬୦୪ ମକଦମା ଫେରସ୍ତ ସହିତ ବ୬୮, ବ୬୯, ବ୭୦, ବ୭୧ରୁ କ୍ସ୪
ନ୬୦୫ମ୍ବ ମକଦମା ଫେରସ୍ତ ସହିତ ବ୭୨, ବ୭୩, ବ୭୪, ବ୭୫ରୁ କ୪
ନଥି ବ୍ରା,ନ୬୦୬ମ୍ବ ମକଦମା ଫେରସ୍ତ ସହିତ ବ୭୬,ବ୭୭, ବ୭୮ ବ୭୯ରୁ କ୪
ନଥି ବ୍ରା, ୬୦୭ମ୍ବ ମକଦମା ଫେରସ୍ତ ସହିତ ବ୮୦, ବ୮୧, ବ୮୨,ବ୮୩ରୁ କ୪
ନଥି ନ୬୦୮ମ୍ବ ମକଦମା ଫେରସ୍ତ ସହିତ ବ୮୪, ବ୮୫, ବ୮୬, ବ୮୭ରୁ କ୪
ନଥି ବ୍ରା. ନ୬୦୯ମ୍ବ ମକଦମା ଫେରସ୍ତ ସହିତ ବ୮୮,ବ୮୯,ବ୯୦,ବ୯୧ରୁ କ୪
ନଥି ନ୬୧୦ମ୍ବ ମକଦମା ସହିତ ବ୯୨, ବ୯୩, ବ୯୪, ବ୯୫, ବ୯୬ କ୍ସ୫
ନଥି ୬୧୧ମ୍ବ ମକଦମା ଫେରସ୍ତ ସହିତ ବ୯୭, ବ୯୮, ବ୯୯, ବ୧୦୦ରୁ କ୍ସ୪
ନଥିନ୬୧୨ମ୍ବ ମକଦମା ଫେରସ୍ତ ସହିତ ବ୧୦୧, ୧୦୨,୧୦୩,୧୦୪,୧୦୫ରୁକ୫
ନଥିବ୍ରାନ୬୧୩ମ୍ବ ମକଦମା ଫେରସ୍ତ ସହିତ ବ୧୦୬,ବ୧୦୭,ବ୧୦୮,ବ୧୦୯ରୁ କ୪
ନଥିବ୍ରାନ୬୧୪ମ୍ବ ମକଦମା ଫେରସ୍ତ ସହିତ ବ୧୧୦,ବ୧୧୧,ବ ୧୨,ବ୧୧୩ରୁକ୪
ନ୬୧୫ମ୍ବ ମକଦମା ଫେରସ୍ତ ସହିତ ବ୧୧୪, ୧୧୫, ବ୧୧୬, ବ୧୧୭ରୁ କ୪
ନଥି ନ୬୧୬ମ୍ବ ମକଦମା ଫେରସ୍ତ ସହିତ ବ୧୧୮,ବ୧୧୯,ବ୧୨୦,ବ୧୨୧ କ୪
ଶପୋଷ ମହାଫିଜ ବ୧୧୨ କ୧
ରୋବକାରୀ ସ୍ତ୍ନ୧୮୫୧ ମସିହା ନବମ୍ବ ମାସ ତା ଲେଖିତ ବ୧୨୩ କ୧
ଜମାନବନ୍ଦୀ ଗଡ଼ ମଜକୁର ସରଦ ସୀମାନା ଚଉହଦୀ ଓ୍ୟାକଫକାର
ଗୁହ୍ମାମାନଙ୍କର ବ୧୨୪ ୧୨୫ କ୨

ଦୃଷ୍ଟି ଓ ଶ୍ରବଣରେ ଆସି ଓ ଚଦୋରଖରେ ଜଣାଗଲା ଯେ ଏକ ମୂଦଲି ମଧୁସୂଦନ ହରିଚନ୍ଦନ ଖଣ୍ଡାଏତ ଏଥିମଧ୍ୟ ବୃତ୍ତିମାନଙ୍କୁ ବହେଲ ରଖାଇବା ପ୍ରାର୍ଥନାରେ ଆପଣା ଜବାବ ସଙ୍ଗେ ପରଓ୍ୱାନା ଦାଖଲ କରିଅଛୁ । ସେ ପରଓ୍ୱାନା ୨୪ ଦଫାରେ ସଂଯୁକ୍ତ ଥିବାରୁ ତାହା ଦେଖିବାରେ ଶ୍ରୀଯୁକ୍ତ ଗଭର୍ଣ୍ଣର ଜେନେରାଲ ବାହାଦୁର ସାହେବ ଜିଉଙ୍କ ହଜୁରରୁ ମୂଦଲି ଗୋପାଳବାପ ଧ୍ରୁବଜୟ ହରିଚନ୍ଦନ ଗଡ଼ ମଜକୁର ଖଣ୍ଡାଏତ ତହିଁର ରକବା ବୃତ୍ତି ବା୭୪। ୦ ମାଣ ଓରଣ୍ୟ ଗେଣ୍ଟା ସୁଦ୍ଧା ଅନତ୍ମୁଷ୍ଣ ହୋଇ ଦିଆଯାଇ ସେ ଗଡ଼ ସାଲିଆନା ମୁକରରି ପେସକସ ଟ୩୭୩ଙ୍କା ଜମାରେ ଧ୍ରୁବଜୟ ହରିଚନ୍ଦନ ତାହାବାଦେ ତାଙ୍କ ଓ୍ୱାରସମାନେ ପୁତ୍ର ପୁତ୍ରାଦି ଗଡ଼ ମଜକୁର ଖଣ୍ଡାଏତ ଅମଲ ଦଖଲ କରି ଗଡ଼ ମଜକୁରରେ ଯେ କିଛି ପୂର୍ବରୁ ଲାଖେରାଜ ତାହା ଭାଇ କୁଟୁମ୍ବ ଅଥବା ଆଉ କେଉଁ ଗତ ମତେ ଅନ୍ୟ ଲୋକଙ୍କ ହକରେ ସେମାନଙ୍କ ଦଖଲରେ ଥାଏ ତାହା ପୂର୍ବବତ ବାହେଲ ସେ ଗଡ଼ରେ ଥିବା ଜଙ୍ଗଲାଟ ବୃତ୍ତି ଉଠିଅ.କରି ଆପଣା ହକ ଜାଣିବା ଓ କଦାପି ସଂକୋଞ୍ଚ କାର୍ଯ୍ୟକରକ ଲୋକଙ୍କର କେହି ଏ ଗଡ଼ର ଉପରୋକ୍ତ ମୁକରିର ଖଜଣା ଉପରେ ବେଶି ଖଜଣା ମୁକରିର କରି ନପାରିବା ବିଷୟରେ ସାହେବ ମହାସୁଫଙ୍କ ହଜୁରରୁ ସ୍ନ୧୮୨୦ ମସିହା ଡିସେମ୍ବର ମାସ ୧୧ ତାରିଖ ନଂମ୍ବର ସନନ୍ଦ ଅର୍ଥାତ ପରଓ୍ୱାନା ଧ୍ରୁବଜୟ ହରିଚନ୍ଦନଙ୍କ ନାମରେ ସାଦର ହୋଇଅଛନ୍ତି ଓ ସେ ପରଓ୍ୱାନା ଲେଖିତ ବା୬୭।୧୦ମାଣ ବୃତ୍ତି ଏ କସ ସାବକ ତହସିଲଦାର ଗୋଲାମକାଦର ତେହେଶି ସ୍ନ୧୨୧୩ ସାଲ । ମୁ । ୧୮୦୫ ମସିହା ଭିଆଣ ଜମାବନ୍ଦୀ କ.ଗଜ ଯେ ସଦରରୁ ରେଜେଷ୍ଟରି ସୁରତରେ ମଂଜୁର ଅଛୁ ତହିଁରେ ଦରଦ ଅଛୁ ଓ ସ୍ନ୧୨୩୮ ଦଶ ସାଲ ଜରିବରେ ୫୮।୧ବା ୧୭ମାଣ ୨୦ ଗୁଣ୍ଠ ୧୦ବିଶ୍ୱା ମଧ୍ୟରୁ ପଡ଼ିଆ ଓଗେର ୪୧୦ବାଟି ୫ମାଣ ୧ଗୁଣ୍ଠ ୬ବିଶ୍ୱା ଓସିହ୍ନା ଖାନାବାଡ଼ି ବା୩।୩।୧୭।୧୨ବିଶ୍ୱା ଓ ଲାଖେରାଜ ବା୭।୧୭।୦।୧ ଓ ଜାଗିର ବା୧।୧୦।୧୧।୧ ବିଶ୍ୱା ଏ ରୁପ ମିହ୍ନା ବା୫୦୨।୧୬।୧୩ଗୁଣ୍ଠ ଓ ହାସିଲାଟତ ବା୭୧।୧।୦।୧୦ବିଶ୍ୱା ଏହି ମାଫିକେ ଲେଖାଥାଇ ଏହି ସାମିଲରେ ଥିବା ଉକ୍ତ ଦାଏର ନିସ୍ତର ଓ ଟଙ୍କିଆଣ ବୃତ୍ତିମାନ ଅଛୁ ଓ ସାଧୁ ସାହୁ ବୟସ ୬୦ ବର୍ଷ ଓ ବନମାଳୀ ମୁଦୁଲି ବୟସ ୨୪ ବର୍ଷ ଗୃହାମାନଙ୍କ ଜମାନବନ୍ଦୀରୁ ମଧୁସୂଦନ ହରିଚନ୍ଦନ ପ୍ରପିତାମହ ଗଦାଧର ହରିଚନ୍ଦନ ଓ ପିତାମହ ଧ୍ରୁବଜୟ ହରିଚନ୍ଦନ ଓ ପିତା ବାସୁଦେବ ଶ୍ରେଷ୍ଟଗସ୍ତ ଓ ଖୋଦ ମୂଦଲି ଏରୂପେ ଏମାନେ ଗଡ଼ ମଜକୁର ଖଣ୍ଡାଏତ ଓ ତାଙ୍କ ନିଜ ଲାଖେରାଜ ବୃତ୍ତି ଦଖଲ ଅମଲ କରିଥିବା ଓ ତାଙ୍କ ପୂର୍ବପୁରୁଷଙ୍କ ଦିଆନ ମାଫିକ ପ୍ରତାରଣା ଦଖଲକାରମାନେ ଦାଏର ଗଡ଼ ମିଳାବ ଟଙ୍କିଆଣ ବୃତ୍ତିମାନଙ୍କର ଟଙ୍କି ଅର୍ଥାତ ଦେବୋତ୍ତର ବାବତି ଟ୨।୧୦ଅଣା୧୦ଓ ବ୍ରହ୍ମୋତ୍ତର ବାବତି ଟ୩।୫ଅଣା୨୫

ଓ ଦଉଖଳବଗତ ବୃତ୍ତିର ଟଙ୍କି ବ ୧ଟି ଟଙ୍କା ନିରଖରେ ଖଣ୍ଡାଏତ ମଜକୁରଙ୍କ ମାରଫତେ ଦେଇ ଲାଖରାଜ ବୃତ୍ତିମାନଙ୍କୁ ନିଷ୍କରରୂପେ ପୁରୁଷାନୁକ୍ରମେ ନିର୍ବିଘ୍ନରେ ଦଖଲ ଅମଲ କରୁଥିବାରୁ ଉତ୍ତମରୂପେ ପ୍ରକାଶ ।

ଯଦ୍ୟପି ଉଚିତ ସନ ୧୮ଶ ବ ମା୯ ଏ ଶଙ୍କାଦ ସନାବ ଗଭର୍ଣ୍ଣର ଜେନେରଲ ବାହାଦୁର ସାହେବ ଜାହକ ହଜୁରରୁ ହାସଲ ହୋଇଥିବା ପରୱାନା ମୁତାବକ ବାର୍ଷିକ ୧୦ମାଣ ବୃତ୍ତି ଗୋଲମକାଦର କାଗଜ କ ସେ ରେଜେଷ୍ଟରୀ ସୁରତରେ ମଞ୍ଜୁର ଅଛୁ ସେ ସଙ୍ଗେ ସମାନ ଓ ଦୋରସ୍ତ ଆସି ଦଶସାଲ କାଗଜରେ ଦେଶୀ ହୋଇଥିବାରୁ ଜଣାଯାଏ କିନ୍ତୁ ଖଣ୍ଡାଏତ ମଜକୁର ଦୋଷବଶ କୌଣସି ହକଦାର ଇଲାକାର ବୃତ୍ତି ଆପଣା ଗଡ଼ ସାମିଲରେ ନ ମିଶାଇ ବରାବର ସନନ୍ଦ ଲିଖିତ ଚୌହଦୀ ମାଫିକେ ଦଖଲ ଅମଲ କରୁଥିବା ଓ ସେ ଗଡ଼ରେ ଥିବା ଜଙ୍ଗଲାଟ କାଟି ବୃତ୍ତି ଆବାଦ କରୁଥିବାରୁ କଶବରେ ପ୍ରୱାନାରୁ ପ୍ରଚଳେଣି ବୃତ୍ତି ହୋଇ ଥିବାରୁ ଓ ସେ ବୃତ୍ତି ସାମିଲରେ ଉକ୍ତ ଦାଏର ଥିବା ବୃତ୍ତିମାନ ଥାଇ ତହିଁରେ ଦଖଲକାରମାନେ ପୂର୍ବବତ୍ ଦଖଲ ଅମଲକରି ଖଣ୍ଡାଏତ ମାରଫତେ ଟଙ୍କା ଦେଇଥିବାରୁ ଓ ଖଣ୍ଡାଏତ ମଜକୁର ସେ ସନନ୍ଦ ଦଇବତ ମୁତାବକ ହକଦାର-ମାନଙ୍କ ହକରୁ କିଛୁ ବୃତ୍ତି ଅପହରଣ ନକରି ସାବକ ମାଫିକେ ବାହେଲ ରଖି ଥିବାର ଉଜ୍ଜ୍ୱଳ ରୂପେ ବଦତ ଏବଂ ଉପର ଲେଖା ଉଦୁ ହାତରୁ ଦାଏର ହେବା ବୃତ୍ତିମାନ ଏ ସନନ୍ଦ ଇଲକାର ଥିବାରୁ ଏଥିର ଅନ୍ୟ ତଦାରଖ କିମ୍ବା ତହିଁର କିଛୁ କର ନିସ୍ତ କରିବାର ଆବଶ୍ୟକ ନହୋଇ ସନନ୍ଦ ମଜକୁର ସଏବତ ମାଫିକେ ଦଖଲକାରଙ୍କ ଦଖଲରେ ଏ ବୃତ୍ତିମାନଙ୍କୁ ବାହେଲ ରଖା କରିବାର ମନାସ ଜାଣି

ହୁକୁମ ହେଲକ

ଦାଣ୍ଡିମାଳ ଜିଲା ମଳିପଡ଼ା ଗଡ଼ ଇଲକା ମୌଜାମାନଙ୍କ ଦାଏରଥିବା ନମ୍ବର ମା୧୬୭।୧୦।୨ବିଶ୍ୱା ଟଙ୍କିଆଣ ମା୧୮।୨।୭ବିଶ୍ୱା ଏ ରୂପ ମା୩୩।।୧।୯ବିଶ୍ୱା ବୃତ୍ତିମାନଙ୍କ ପକ୍ଷରୁ ସରକାର ମୁଦେଇ ଦାବୀ ଅବହେତ ଜାଣି ସାବକ ଦସ୍ତୁର ମୁତାବକ ନମ୍ବର ଟଙ୍କିଆଣ ସୁରତରେ ଉପରଲିଖିତ ମୁଦଲ-ମାନଙ୍କ ଦଖଲରେ ଜେନେରଲ ରେଜେଷ୍ଟରୀ ନମ୍ବରୱାରୀ ମୁତାବକ ସଦା ସର୍ବଦାରୁ ବାହେଲ ଓ ବରକରା ରଖାଯାଉ ଓ ରୋବକାରୀ ନକଲ ନଥିବାର ଫେରସ୍ତ ସିରସ୍ତାରେ ରଖି ଦୋରସ୍ତ ଅସଲ କାଗଜାତକୁ ମଞ୍ଜୁର ପ୍ରାର୍ଥନାରେ ଏକ ସିମିତ ଓ ଏ କଲଟର ସାହେବଙ୍କ ଦ୍ୱାରା ଏ ଜିଲୱାଲ ନିସ୍ତା ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କ ହଜୁରକୁ ପ୍ରେରଣ କରାଯାଉ ।

Sd. ରଇତନ ଚରଣ ମହାନ୍ତି, ନକଲ ନବିସ

ରେବକାଶ୍ମ କଟେଷ୍ଟରେ ରେବୃନ ସାହେବ କମୀ ସ୍ନ ୧୯ ଗେର୍ଜେ—ଓୀ—ଥୃତ୍ତ୍ୱର ଦାନ ମୋଫଟ ମେଲଯ ସାହେବ କମିସ୍ନରଙ୍କ ଦସ୍ତରେ ତା ୧୯ଶକ ମାହେଜନଓର ସ୍ନ ୧୮୪ ମସିହ୍ଵା । ମୁ. ଫାନେ ମାହେ ମାଘ ସ୍ନ ୧୨୮୦ ସାଲ ରେଜ ଗୁରୁବାର । ମୁ । କଟକ ।

ନ୬୧୩ମ୍ବ ଡ଼ିପୋଟୀ । କ । ଖୋରଧା ନ୬୨ମ୍ବ କମିସ୍ନର
ସରକାର ବାହାଦୁର— ମୁଦେଇ

ବାସୁଦେବ ଶ୍ରେଷ୍ଟଗ୍ର ହାଲ । ଦ । ମଧୁସୂଦନ ହରିଚନ୍ଦନ
ଖଣ୍ଡ ଏତ ଓଗେର— ମୁଦାଏଲ

ପ୍ର: ଦାଣ୍ଡିମାଳ କସ ବା କଜଗଡ଼ ମହଲା ଓଗେର ମା୩୭୮।୨୧।୯ବଣ୍ଟା ଟଙ୍କିଆଣ ଦେବଉତ୍ତର ଓ ଅମୃତ ମଣୋହି ଓଗେର ଲଖରାଜ ଜମି ଉପରେ କର ବସାଇବା ମକଦମା ।

ସ୍ନ ୧୮୨୮ ମସିହ୍ଵା ଆଏନର ୪ଧାରା ୪ପ୍ରକରଣ ହୁକୁମାନୁସାରେ । କ । ଖୋରଧା କଲଟର ସାହେବଙ୍କ ଦ୍ଵାରା ଏ ମଧୁସୂଦନ ପଟ୍ଟନାୟକ ଡ଼ିପୁଟୀ କଲଟରଙ୍କ ପଠାଇବା ମାଫିକେ ଏ ମକଦମାର କାଗଜାତ ମା୩୩୮।୨୧।୯ବଣ୍ଟା ଲଖରାଜ ଜମି ବାହେଇ ପ୍ରାର୍ଥନାରେ ହଜୁରରେ ପହୁଞ୍ଚି ମୂଲ ଓ ବଥୁଯା ଅଜରେ ଦୃଷ୍ଟିରେ ଓ ଶ୍ରବଣରେ ଆସି ଜଣାଗଲ ଯେ ଡ଼ିପୁଟୀ କଲଟର ମହସୁଫ ସ୍ନ ୧୮୪୧ ମସିହ୍ଵା ନଭେମ୍ବର ମାସ ତା୧୭ରଜକୁ ବଜାଗ୍ମ ଲେଖିତ ଅନୁସାରେ ଜମି ମଜକୁରକୁ ଲଖରାଜ ସୁରତ ମୁଦାଏଲ ଭୋଗ ଓ ଦଖଲରେ ବାହେଲ ରଖିଅଛନ୍ତି ହଜୁର ତଜବଜରେ ଡ଼ିପୋଟୀ ମହସୁଫଙ୍କ ଏ ବିଷୟର ବିବେଚନା ଗ୍ରାହ୍ୟମ ସେଥିରେ କେଉଁଣସି ଆପତ୍ତି ଜଣା ନଗଲା । ଏ କାରଣ

ହୁକୁମ ହେଲକ ।

ମା ୩୩୮।୨୧।୯ବଣ୍ଟା ଜମି ଲଖରାଜ ସ୍ୱରୂପ ମୁଦାଏଲର ଭୋଗ ଓ ଦଖଲରେ ବାହେଲ ଥାଉ ଏ ମକଦମାର କାଗଜାତ ଏ ରୁବକାରୀ ନକଲ ସାମିଲ ସାହେବ ମହସୁଫଙ୍କ ଜରିଆରେ ଡ଼ିପୁଟୀ ମହସୁଫଙ୍କଠାକୁ ପଠାଯାଉ ସେ ମୁଦାଏଲକୁ ଏ ହୁକୁମ ଗୋଚର କରାଇ ଦେବେ । ଇତି ।

ହୁକୁମ ହେଲକ—ଏ ଜମି ଜରକାଳ ପର୍ଯ୍ୟନ୍ତ ମୁଦଲ ଦଖଲରେ ବାହେଇ ରଖି ତାହାର ବହିରେ ଦରଦ ଦିଆଯାଉ ତା୨୫ରିଖ ମାର୍ଚ୍ଚ ସ୍ନ ୧୮୪୩ ମସିହ୍ଵା ।

Sd-A. J. Mills
Commissioner.

ମନ୍ଦ କରମ କରୁ ନ ଭଜ୍ ହରି,
ଯିବାକାଳେ କେ ସଙ୍ଗେ ନ ଯିବ ଫେରି ।
ରହିବେ ମୃତକ ବନ୍ଧେ ଅଲଗା ହୋଇ,
ଲେଖା ଦେଖିଣ ଦେବେ ନର୍କେ ବୁଡ଼ାଇ ।୭

ବର୍ଣ୍ଣ ମୃତ୍ୟୁ ମୃତ୍ତିକା ଜୀବନ ଶସ୍ୟ,
ଶେଷ ହୋଇବ କାଳାନ୍ତରେ ଅବଶ୍ୟ ।
ଷଡ୍ ଅର୍ଦ୍ଧ ତାପରେ ହୋଇବୁ ତାପି,
ସନ୍ତରେ ଯୋଗଦେବୁ ନାହିଁ ରେ ପାପୀ ।୮

ହରିଚନ୍ଦନ ହର ପଦେ ବନ୍ଦନ,
କ୍ଷମିବେ ହର ଦୁଃଖ କମଳାପତି ।
କ୍ଷମାନାଥ କ୍ଷୀରବ୍ଧୀବାସୀ ଶ୍ରୀହରି,
କ୍ଷୀରବ୍ଧୀ କେମା ବନ୍ଧୁ ଦଅ ଉଦ୍ଧାର ।୯



# ନୀଳାଚଳ ପ୍ରଶସ୍ତି

ଶ୍ଳୋକ

ଜଗଦାନନ୍ଦ କନ୍ଦାୟ ପ୍ରଣତାର୍ତ୍ତି ହରାୟଚ,
ନୀଳାଚଳ ନିବାସାୟ ଜଗନ୍ନାଥାୟତେ ନମଃ ।୧

ଅନାଥସ୍ୟ ଜଗନ୍ନାଥ ନାଥସ୍ତ୍ୱଂ ମେନ ସଂଶୟ,
ଯସ୍ୟ ନାଥୋ ଜଗନ୍ନାଥ ତସ୍ୟ ଦୁଃଖଂ କଥଂ ପ୍ରଭୋ ।୨

## ଗୀତ—

ରାଗ—ବସନ୍ତ

ସୁନୀଳ ନିର୍ମଳ ନୀଳ ତରଙ୍ଗଭୂଷିତ ନୀଳ
ଜଳଧି କୂଳ ଶ୍ରୀ ନୀଳାଚଳ,
ଚୂଳ ଅଳକା ଦେଉଳ ସଲିଳରେ ଶତଦଳ
ଶୃଙ୍ଖଳ ଚପଳ ମାଳ ମାଳ ହେ,
ଜଳଦରେ, ଚଳପ୍ରଭ ଆଭ୍ର ସୁମଣ୍ଡୁଳ,
ସକଳ ମନ୍ଦିମା ଠୂଳ ସୁରନର ଉରଗାଳ
ତୁଳନାରେ ଶିର ମଣିମାଳ ।୧

ଅମଳ କମଳ ଦଳ ସୁଢଳ ନେତ୍ରଯୁଗଳ
କପୋଳ ଅଳକ ଅଳିକୂଳ,
କସ୍ତୁରୀ ତିଳକ ଭଳ କଉସ୍ତୁଭ ବକ୍ଷସ୍ଥଳ
ଶୋଭା ବୈଜୟନ୍ତୀ ବନମାଳ ହେ,
ହଳଧର, ହଳଧାବର୍ଣ୍ଣୀ ଭଗ୍ନୀ ସଙ୍ଗର,
କଳି କାଳ କାଳି କାଳ- କୂଟ ହରଣେ ଯାଙ୍ଗଳ
କ୍ଷେତ୍ରପାଳ ଭକତ ବତ୍ସଳ ।୨

ଶ୍ରୀକ୍ଷେତ୍ର ଶ୍ରୀନୀଳାଚଳ ସୁଶଙ୍ଖନାଭି ମଣ୍ଡଳ
ରତ୍ନସିଂହାସନ ଶତଦଳ,
କମଳେ କମଳାପତି ତ୍ରିଲୋକପତି ଶ୍ରୀମୂର୍ତ୍ତି
ବିଜେ ଦାରୁବ୍ରହ୍ମ ଆଦିମୂଳ ହେ,
କାମପାଳ, ଭଦ୍ରାସହ ତ୍ରିମୂର୍ତ୍ତି ସୁମେଳ,
ଭକ୍ତଗଣେ ସୁଦର୍ଶନ ଦାନେ ଧୃତ ସୁଦର୍ଶନ
ବିରାଜ ଶ୍ରୀ ଭକତ ବତ୍ସଳ ।୩

ସୁଶୁଭ୍ରେନ୍ଦୁ କୁନ୍ଦ ଧବଳ ବଳଦେବ ମହାବଳ
ଶ୍ରୀହସ୍ତରେ ଲଙ୍ଗଳ ମୂଷଳ,
ସୁବର୍ଣ୍ଣ ରତ୍ନ କୁଣ୍ଡଳ ମଣ୍ଡେ ସୁଗଣ୍ଡ ମଣ୍ଡଳ
ଶିରେ ଫଣୀ ଚୂଳ ସମୁଜ୍ଜ୍ୱଳ,
ଶ୍ରୀ ବଶୁପାଳ, ଅଗ୍ରଜ ଯେ ରାମ କାମପାଳ,
ସଂଗ୍ରାମେ ଅତି ଚପଳ ବ୍ରହ୍ମା ରୁଦ୍ରେନ୍ଦ୍ର ସକଳ
ବନ୍ଦ୍ୟ ପାଦ କମଳ ଯୁଗଳ ।୪

ଶଶଧର ବେଦବର ତ୍ରିମୂର୍ତ୍ତି ତ୍ରିପୁରେଶ୍ୱର
ମା ଉମା ପାର୍ବତୀ ପ୍ରାଣେଶ୍ୱର,
ପାଳନ ସଂହାର ସ୍ଥିତି କର୍ତ୍ତା ଷଡ଼ୈଶ୍ୱର୍ଯ୍ୟଭୂତ
କ୍ଷୀରାବ୍ଧି ନଗାତ୍ମଜ ସ୍ଥିତିଶ୍ୱର,
ତ୍ରିଗୁଣର, ରକ୍ଷ ଧର ତ୍ରିଲୋକ ଈଶ୍ୱର,
ନୀଳ ଧବଳ କମଳ ବରନ ଏକତ୍ର ଠୂଳ
ଦରଶନେ ପାପ ତାପ ଦୂର ।୫

କାଳକ ବ୍ରଜ ଆଳକ ବ୍ରଜ ବାଳକ ମେଳକ
ଗୋପ ଗୋପାଳକ ସୁବୃଳକ,
ବାଳକ ରୂପେ କଳକ କ୍ଷୀରେ ପ୍ରାଣ କବଳକ
ପୁତନାର ଉନ୍ମୁଣ୍ଡ ଶାଳକ,
ସୁନ୍ଦଳକ, ବକ ବକ୍ତ୍ର କଳ ଦ୍ୱିଫାଳକ,
ଦେବ ଦ୍ୱିଜରେ କଳଙ୍କ ହେବାରୁ ରକ୍ଷ ଡାଳକ
ବଧ କଲ ସ୍ୱ ପିତୃ ଶାଳକ ।୬

ନସ୍ତନ ସଜ ସବ୍ରେଜ ତେଜ ଗଞ୍ଜେ ଦ୍ୱିଜରାଜ
ବନ୍ଦ୍ୟ ବ୍ରହ୍ମରେନ୍ଦ୍ର ସୁରବ୍ରଜ,
ଖଗରାଜ ଧ୍ୱଜ ଅଗ୍ରଜ ଯୁବରାଜ ତାଳଧ୍ୱଜ
ରଥ ଗୁଣ୍ଡିଚ୍ଚ ବିଜୟେ ସଜ,
ବ୍ରଜରାଜ, ଭଗ୍ନୀ ଭଦ୍ରାଦେବୀ ରଥେ ସଜ,
ନଜର ମାଝେ ହାଜର ହଜାର ହଜାର ନର
ପାପ ତମ ବିନାଶନେ ଦୃଷ୍ଟି । ୭

ଅମନ୍ଦ ମନ୍ଦର ଧର ନନ୍ଦ ନନ୍ଦନ ସୁନ୍ଦର
ଶ୍ରୀନୀଳକନ୍ଦର ପୁରନ୍ଦର,
ବନ୍ଦିତ ଦେବବୃନ୍ଦର ସେବିତ ନେଝ ପନ୍ଦର
ଋଷି ମିଝ ସୁଗ୍ରୀବ ବାନ୍ଦର,
ବିଦ୍ରନ୍ଦର, ରକ୍ଷବୃନ୍ଦ ନାଶିଲ ଫାନ୍ଦର,
କୁନ୍ଦଦନ୍ତୀ ବିଧାଧର ଅରବିନ୍ଦ ମଧୁକର
ଶୋକ ଲୋକ ହରି ନିଛନ୍ଦର ।୮

ପଣ୍ଡିତଙ୍କ କଣ୍ଠମଣି ରୁଣ୍ଡିଭୂତ ଜନଶ୍ରେଣୀ
ଖଣ୍ଡିବାକୁ ପାପ ତାପ ଘୋର,
ଭଣ୍ଡି ରାଣୀ କମଳିନୀ ମଣ୍ଡି ଅଗ୍ରଜ ଭଉଣୀ
ପହଣ୍ଡି ବିଜୟ ଗୁଣ୍ଡିଚ୍ଚର,
ହେଣ୍ଡିମାର, ଦଣ୍ଡି ଶିଷ୍ୟ ଭେଣ୍ଡିଆ ଶିଙ୍ଗାର,
ମଣ୍ଡି ଟାହିଆ ମାଧୁରୀ ଖାଣ୍ଡିଖିଆ କଟି ଡୋର
ଓଟାର ମାଣ୍ଡିରେ ବିଜେ କର ।୯

ବନ୍ଦନ କରି ସ୍ୟନ୍ଦନ ପରେ ସଫଳା ନନ୍ଦନ
ବ୍ରଜୁ ଯଥା ଶ୍ରୀନନ୍ଦ ନନ୍ଦନ,
ନେଲ ମଧୁବନେ ରଙ୍ଗେ ରଙ୍ଗଯାତ୍ରାର ପ୍ରସଙ୍ଗେ
ତଥା ହରି ରଞ୍ଜିତ ଚନ୍ଦନ,
ନନ୍ଦଘୋଷ, ରଥେ ବେନେ ପ୍ରଭୁ ଜଗଦୀଶ,
ବ୍ରଜ ବରଜନେ ବ୍ରଜ- ଭଜ ତନୁଜ ବିରାଜ
ବିଜୟୁ ଗୁଣ୍ଡିଚ୍ଚ ମଧୁଦେଶ ।୧୦

ନୀଳଶୈଳ ଗୁପ୍ତସ୍ଥଳ ଗୋଲକ ବ୍ରଜମଣ୍ଡଳ
ତେଜି ନୀଳମଣି ହଳପାଣି,
ଗୁଣ୍ଡିଚ୍ଚା ମଣ୍ଡପ ମଧ୍ୟ ଦେଖ ବଜେ ବ୍ରଜବଧୂ ।
ଗୋପାଳୁଣୀ ଶ୍ରୀଲକ୍ଷ୍ମୀ ରମଣୀ,
ଗଣ୍ଡେପାଣି, ନେତ୍ରେ ପାଣି ଭଗ ବାଣୀ ଭଣି,
ଚକ୍ରପାଣି, ଚନ୍ଦ୍ରାପାଣି ଯୋଡେ ବାଣୀ କମଳିନୀ
ଭଜାଇ ଯାଉଛ ଚନ୍ଦ୍ରାମଣି ।୧୧ ।

ଶ୍ଳୋକ

ନୀଳାଦ୍ରୌ ଶଙ୍ଖ ମଧ୍ୟେ ଶତଦଳ କମଳେ ରତ୍ନ ସିଂହାସନସ୍ଥା
ସର୍ବାଲଙ୍କାର ଯୁକ୍ତୋ ନବଘନ ରୁଚିରଂ ସଂସ୍ଥିତା ସ୍ବଗ୍ରଜେନଂ
ଭଦ୍ରାୟା ବାମ ଭାଗେ ରଥ ଚରଣ ଯୁକ୍ତେ ବ୍ରହ୍ମା ରୁଦ୍ରେନ୍ଦ୍ର ବନ୍ଦ୍ୟଂ
ଦେବାନାଂ ସାରମେକଂ ସୁଜନ ପରିବୃତ୍ତ ବ୍ରହ୍ମରୂପ ସ୍ବରମି ।

ଗୀତ—

ଅଗଣିତ ରତି ଗତି ପତିକାନ୍ତ ଶ୍ରୀ ମୂରତି
ଇନ୍ଦ୍ର ନୀଳ ନବଘନ ଦ୍ୟୁତି,
ପତି ବରତ ଆରତି ହୋଇ ଇଚ୍ଛିବେ ପୀରତି
ରତି ପତି କରତବ ସ୍ତୁତି,
ସଖୀମତ, ଧୃତହସ୍ତ ତ୍ରିଭଙ୍ଗ ମୂରତି
ପଦ୍ମାବତୀ ସରସ୍ୱତୀ ଶ୍ରୀମତୀ ଯା ପ୍ରିୟବତୀ
କେ ବର୍ଣ୍ଣିବ ଶ୍ରୀପତି ଭାରତି ।୧୨

ଯେଣ ଏ ଧ୍ୟାନ ବିନତି ପତିତ ଅଗତି ଗତି
ହର ବିପତ୍ତି ବିପତ୍ତି ପତି,
ପତିତ ଗଣେ ଭୂପତି ଅଟେ ମୁଁ କମଳାପତି
ମୋ ସମ ପତିତ ନାହିଁ କ୍ଷିତି,
ନୀଳହସ୍ତ, ହସ୍ତ ରଖି ନାଶି ତା ଅଗତି,
କତିରେ ଆଉ ମୁକତି ଭକତି ଦାତା ଶ୍ରୀପତି
ଦୀନ ପ୍ରତି କର୍ମା ଅଶକତି । ୧୩

କୃତେ ହୋଇ ନରହରି    ହିରଣ୍ୟ ଦନୁଜେ ମାରି
ତା ତନୁଜେ ଦେଲ ଇନ୍ଦ୍ର ଶିରୀ,
ତ୍ରେତାରେ ହରଣ ସୀତା    ବଧି ରକ୍ଷ ଦଶମଥା
ବିଭୀଷଣେ ଛତା ଦେଲ ହରି
ଦ୍ୱାପରରେ, ବ୍ରଜେ ଘଟପଣ୍ଟର କଂସ ମାରି,
କଳିଯୁଗେ ଶ୍ରୀଚୈତନ୍ୟ    କୃଷ୍ଣ ନାମ ସଙ୍କୀର୍ତ୍ତନ
ପ୍ରବର୍ତ୍ତନ କଲ ଗୌରହରି ।୧୪

ନୀଳାଚଳ କଳାକର    ବଳାନୁଜ ଚକ୍ରଧର
ଚକାଡୋଳା କମଳା ବିଳାସ,
କାଳିଦଳା କଷ୍ଟତୋଳା    ବିଳାସେ ଗୁଣ୍ଡିଚ୍ଚ ମେଳା
ବଜେ କଳାନିଧି ନାଦଘୋଷ,
ସଚକ୍ରା, ଷଡ଼ଭୁଜ ରୂପର ପ୍ରକାଶ,
କଳି କଳ୍ମଷ ନାଶ    ସୁରଦୁଷ ଲଭ ତୋଷ
ଶ୍ରୀଗୌରଚନ୍ଦ୍ର ସିମୂର୍ତ୍ତି ବିଳାସ ।୧୫

ମଧୁପୁର, ମଧୁପୁର    ସ୍ୱର ଅକ୍ରୂର ରଥର
ରଙ୍ଗେ ବଜେ ତେଜି ବ୍ରଜପୁର,
କଳିଣ ଦ୍ୱାପର କେଳି    କଳିଯୁଗେ ବନମାଳି
ଦଳିବାକୁ ପାପି ପାପସ୍ୱର,
ଶ୍ରୀକ୍ଷେତ୍ରରେ, ପଦ୍ମନେତ୍ର ଗିରି ଛତ୍ରଧର,
ଶ୍ରୀ ଗୁଣ୍ଡିଚ୍ଚ ରଥ ଯାତ    ଭଗିନୀ ଭ୍ରାତ ସଙ୍ଗତ
ଜାତ କଲେ ପ୍ରଭୁ ଚକ୍ରଧର ।୧୬

ଶ୍ରୀପୁରୁଷୋତ୍ତମ ତୀର୍ଥ    ଦର୍ଶନେ ଜନ କୃତାର୍ଥ
ଧର୍ମାର୍ଥ ସମ୍ପ୍ରାପ୍ତେ ଚରିତାର୍ଥ,
ମୋକ୍ଷ ମାହାତ୍ମ୍ୟ ଅନର୍ଥ    କାମ କ୍ରୋଧ ଲୋଭ ବ୍ୟର୍ଥ
ଚିନ୍ତାହତ ମିଳେ ପରମାର୍ଥ ସେ,
ପୁରୁଷାର୍ଥ, ଦାନେ ରଥେ ବଜେ ଜଗନ୍ନାଥ,
ଭକ୍ତେ ସ୍ୱକୃପା ପଦାର୍ଥ    ପ୍ରଦାନେ କର ଚତୁର୍ଥ
ପାର୍ଥ ସାରଥି ବିଜୟ ରଥ ।୧୭



## ଜଗବନ୍ଧୁ ସିନ୍ଧୁ ସୁତା

### ଶ୍ଳୋକ

ନୀଳାଚଳ ନିବାସାୟ, ନିତ୍ୟାୟ ପରମାତ୍ମନେ
ବଳଭଦ୍ର ସୁଭଦ୍ରାୟ, ଜଗନ୍ନାଥାୟତେ ନମଃ ।

### ଗୀତ—

(ଦୀନବନ୍ଧୁ! ଏହି ଅଳ ଗ୍ରୀଷ୍ମସୁରେ—ଝୁଟେ)

ଜଗବନ୍ଧୁ, ସିନ୍ଧୁ ସୁତା ପ୍ରାଣବନ୍ଧୁ,
ବନ୍ଧୁଜ ଅଧର ବନ୍ଧୁର ଅନ୍ତର
ନୋହୁ ତାର ଭବ ବନ୍ଧୁ । (ଘୋଷା)

ହରି ! ହରିଣୀର ହର ଦୁଃଖ ଘୋର
ବ୍ୟାଧ ଶର ବିନ୍ଧୁ ବିନ୍ଧୁ,
ଦୁଃଶାରେ ବବାସା ପଣ୍ଡୁ ଘୋଷା ଦଶା
ହର ବାସ ସିନ୍ଧୁ ସିନ୍ଧୁ ।୧

ରୁକ୍ମୀର ଅଣ ରୁକ୍ମୀଣୀଙ୍କୁ ଅଣରେ
ଛେଦ ଦ୍ୱିଧା କଲ ଜନ୍ଧୁ,
ବାରଣ ଦୁଃଖ ଜ- ବାରଣ ଶରଣ
ରକ୍ଷଣ କରୁଣାସିନ୍ଧୁ ।୨

ମୀନ ବଂଶୀ ସିନ୍ଧ ଅମିନ ବାଳକରେ
ହତ କଲ୍ଲ ଶର ସିନ୍ଧୁ,
ଦଶକନ୍ଧ କନ୍ଧ ହତେ ସେତୁବନ୍ଧ
ବାନ୍ଧ ପାର ହେଲ ସିନ୍ଧୁ ।୩

ଗୋପାଳ ଖେଳରେ ଗୋପାଳ ଜନ୍ମାନ୍ତେ
ଚକ୍ଷୁଦାନେ ତାର ଅନ୍ଧୁ,
ଯାମାଳାର୍ଜ୍ଜୁନ-ବ ଭଞ୍ଜନ କରିଲ
ଯଶୋମତୀ ଖମ୍ବେ ବାନ୍ଧୁ ।୪

ଦାମା ଦ୍ୱିଜା ଖୁଦ ଭଜା ଖାଇ ରଜା
ଧନି କଲ ବାଲ୍ୟବନ୍ଧୁ,
କୁବୁଜାରେ ଛଳା ଭଙ୍ଗା ଅଙ୍ଗ ରଙ୍ଗା
କଲ ଶୀରେ ପାଟ ବାନ୍ଧୁ । ୫
ହେ କମଳା ବନ୍ଧୁ କମଳ ବନ୍ଧୁଜ
ଅବନ୍ଧୁ ହୋଇ ନ ବାନ୍ଧୁ,
ଦୀନବନ୍ଧୁ କୃପା- ସିନ୍ଧୁ ନାମ ସ୍ମର
ତରୁ ହରି ଭବସିନ୍ଧୁ । ୬

---

## କରତା କରମ ହୀନେ

କରତା କରମଖଣ୍ଡନ ହୁଙ୍କର !
କରୁଣାକର କରୁଣାକର ହରି
କ୍ଷମାନିଧି କ୍ଷମାକର । ପଦ ।
କୃଷ୍ଣ ଖଟଚନ୍ଦ୍ର ଟେଗ ବନ୍ଦ ଘନଶ୍ୟାମ
ଆଦିକନ୍ଦ ଚକ୍ରଧର,
ଛତ୍ରପତି ଜଗଜ୍ୟୋତି ଝାଡ଼ପତି
ଆର୍ତ୍ତିହାରୀ ବଂଶୀଧର । ୧
ଟାଲଲ ମନ୍ଦର ଠଣ୍ଡ୍ରୀ ସୁନ୍ଦର
ଡରହରି ଡମାଳିଆ,
ନୀଳ ନବଘନ ତମାଳ ବରନ
ଥ ଳ ଧାଉ ଗୋପାଳିଆ । ୨
ଦାମୋଦର ଧନ୍ୱନ୍ତର ନିରାକାର
ପଦ୍ମପୃର ପରମେଶ,
ଫଣୀଶାୟୀ ବନଜସ୍ଥୀ ଶ୍ରୀବତ୍ସାଙ୍କ
ମା ରମାର ପ୍ରାଣ ଈଶ । ୩
ଯଶୋଦା କୁମର ରାମ ସହୋଦର
ଲାବଣ୍ୟ ଗୋପାଳ ବେଶ,
ବ୍ରଜେନ୍ଦ୍ର ନନ୍ଦନ ଦେବ ଶ୍ୟାମଘନ
ଷଡ଼ାରି ତାପ ବିନାଶ । ୪
ଯଜ ସରୋଜାକ୍ଷ ହର ହର ଦୁଃଖ
କ୍ଷୀର ସିନ୍ଧୁ ସୁତା ପତି,
ହର ମୋ ଦୁର୍ଗତି ହର ରମାପତି
ହରି ପାଉ ସଦ୍‌ଗତି । ୫

—୦—

## ଶ୍ରୀ ଶଃ ପାତୁ

ନମୋ ନାରାୟଣ ଦେବ ଶଶୀବର୍ଣ୍ଣଂ ଚତୁର୍ଭୁଜ,
ଶଙ୍ଖ ଚକ୍ର ଗଦା ପଦ୍ମ ଧାରଣଂ ବନମାଳିନଂ ।

### ଗୀତ—

ନମୋ ନାରାୟଣ ଶରଣ ରକ୍ଷଣ ଆର୍ତ୍ତିତ୍ରାଣ,
ସଗୁଣ ନିର୍ଗୁଣ ତ୍ରିଗୁଣ ଧାରଣ ବିଷ୍ଣୁ ତ୍ରାଣ ।୧

ସତ ରଜ ତମ ତ୍ରିଗୁଣ କର୍ତ୍ତା କର୍ମ ରୂପେଣ,
ପାଳନ ସୃଜନ ମାରଣ ତ୍ରୟମୂର୍ତ୍ତି ଧାରଣଂ ।୨

ମାଧବ ସ୍ୱୟଂଭୂବ ଭବ ଶ୍ରୀ ପାର୍ବତୀ ରମେଶ,
ସ୍ୱୟଂ ପରଂବ୍ରହ୍ମ ତ୍ରିମୂର୍ତ୍ତି ବିଷ୍ଣୁ ବ୍ରହ୍ମା ମହେଶ ।୩

ପରଂ ବ୍ରହ୍ମଣ ନାରାୟଣେ ଜ୍ୟୋତି ବିଶ୍ୱପ୍ରକାଶ,
ରମାରାଜ ରାମଶେଖର ନିତ୍ୟ ସ୍ୱପ୍ନ ବିନାଶ ।୪

ଅଷ୍ଟନିଧି ଧୀପ ସମୃଦ୍ଧି ବନ୍ତ କରୁଣାନିଧି,
ଅନ୍ତର୍ଯ୍ୟାମୀ ରେମା ପ୍ରାଣାଧୀଶ ସେବ୍ୟ ଶେଷେଣ ବିଧି ।୫

ଭବାବ୍ଧୀ ଆବର୍ତ୍ତେ ସୁଧୀର ଶୁଦ୍ଧି ବାକ୍ୟେ ବଧିର,
ଅଧୀର ଚିତ୍ତ ମୋ ଦୁର୍ବୁଦ୍ଧି ହର ରାଧିକା ବର ।୬

### ନବଧା ଭକ୍ତି ଶ୍ଳୋକ

ସ୍ମରଣଂ ଶ୍ରବଣଂ ବିଷ୍ଣୁ କୀର୍ତ୍ତନଂ ପାଦସେବନଂ
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସାକ୍ଷ୍ୟମାତ୍ମା ନିବେଦନଂ ।

### ଗୀତ—

ସ୍ମରଣ ଶ୍ରବଣ କୀର୍ତ୍ତନ ପାଦସେବା ଅର୍ଚ୍ଚନ,
ବନ୍ଦନ ସଖାତ୍ମା ପ୍ରଦାନ ନବଧାଭକ୍ତି ଚିହ୍ନ ।୭

ଓଁକାର ଏକାକ୍ଷର ମନ୍ତ୍ରେ ନିରାକାର ସ୍ମରଣ,
ସରସିଜାସନ ସଚ୍ଚିଦାନନ୍ଦ ବ୍ରହ୍ମରୂପିଣ ।୮

### ଶ୍ଳୋକ

ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।
ଯଦା ଯଦାହି ଧର୍ମସ୍ୟ ଗ୍ଳାନି ର୍ଭବତି ଭାରତ
ଅଭ୍ୟୁତ୍‌ଥାନଂ ମଧର୍ମସ୍ୟ ତଦାତ୍ମନାଂ ସୃଜନାଂ

### ଗୀତ—

କମ୍ବୁ ଅରି ଗଦା ଅମ୍ବୁଜ ଚତୁର୍ଭୁଜ ଶ୍ରୀକାନ୍ତ,
ଭକ୍ତେ ତାରି ଦୁଷ୍କୃତେ ମାରି ଧର୍ମାଧର୍ମ ରକ୍ଷାନ୍ତ ।୯

### ଶ୍ଳୋକ

ସତ୍ୟେ ଚ ଧ୍ୟାୟତେ ବିଷ୍ଣୁ ତ୍ରେତାୟା ଯଜତ୍ୟେମଖୈ
ଦ୍ୱାପରେ ପରିଚର୍ଯ୍ୟା କଳୌ ଚ ହରି କୀର୍ତ୍ତିନଂ ।

### ଗୀତ—

ନର ଦେହବନ୍ତ ଯୁଗାନ୍ତ ମୂର୍ତ୍ତି ଆଦି ଅନନ୍ତ,
ସତ୍ୟ ତ୍ରେତା ଦ୍ୱାପର କଳି ଚତୁର୍ଯୁଗ ସାମନ୍ତ ।୧୦
ସତ୍ୟେ ଧ୍ୟାନ ଯଜ୍ଞାନୁଷ୍ଠାନ ତ୍ରେତାରେ କରି ଧର୍ମ
ଦ୍ୱାପରେ ଭକ୍ତେ ଭକ୍ତିଦାନ କଳିଯୁଗେ କୀର୍ତ୍ତନ ।୧୧



# ଅରଜ ରାଜ ତନୁଜ

## ଶ୍ରୀକୃଷ୍ଣାୟ ନମଃ

ନନ୍ଦ ନନ୍ଦନ ଗୋବିନ୍ଦଂ ବୃନ୍ଦାବନ କଳାନିଧେ
କୃଷ୍ଣ ଦାମୋଦର ଶ୍ୟାମଂ ରାଧିକା ପ୍ରାଣବଲ୍ଲଭ ।

### ଗୀତ—

ରାଗ—କାମୋଦୀ

ଅରଜ ରାଜ ତନୁଜ                    ଚରଣ ସରୋଜ
ଭବ ତେଜ ଭବ ମୋହ ବ୍ୟାଜ,
ବରଜ କୁଜନ ମେଳି                    ବରଜ ଉଜ ସ୍ତୁ ବୋଲି
ଝୁଲି ମାଳୀ ଧରି ହୁଅ ସଜ,
ଚତୁର୍ଭୁଜ, ଚକ୍ରକ ଗଦାର ଦରମ୍ବୁଜ,
ମାନ୍ତାରେ ନେଇ ନ ବୁଜ                    କୁବୁଜ ଯେ କରେ ଭଜ
ଉଜ୍ଜ୍ୱଳ ଅମ୍ବୁଜ ପଦେ ଭଜ ।୧

ଶମନ ପୁତ୍ର ନନ୍ଦନ,                    ଧ୍ୟାନରେ ସ୍ମରୁ ବନ୍ଦନ
ଜୟ ଗୋବିନ୍ଦ ନନ୍ଦ ନନ୍ଦନ,
ମନ୍ଦର ଧର ପନ୍ଦର                    ନେଇ ଧାତା ପୁରନ୍ଦର
ସୁନ୍ଦର ଛନ୍ଦ ପଦରେ ଧ୍ୟାନ,
ହୃଦଗଆ, ମନ୍ଦ କର୍ମରେ ନ କର ଛନ୍ଦ,
ପଦ ଦ୍ୱନ୍ଦ ମକରନ୍ଦ                    ତାନେ କରାଅ ମିଳନ୍ଦ
ଭବ ଦ୍ୱନ୍ଦ ଛଡ଼ା ଆନନ୍ଦ ।୨

ବଡ଼ଗଡ଼ ଦ୍ୱାରବତୀ                    ବଡ଼ ଦେଉଳେ ଶ୍ରୀପତି
ବଡ଼ ଭାଇ ଭଉଣୀଙ୍କ ସାଥି,
ବଡ଼ ରଜା ଗଜପତି                    ବଡ଼ ଘଣ୍ଟା ଭୋଗ ନିତି
ବଡ଼ସିଂହାରରେ ତୋଷମତି,
ବଡ଼ ନେଇ, ବଡ଼ ପଣେ ନେତ ଉଡ଼ାଉଛି,
ବଡ଼ ପାପୀ ପାପ ଗାଢ଼                    ଦେଖି ଆଖି ବୁଜି ଦାଢ଼
ଅରି ଧରି ହରି ନଚେଇଛ ।୩

ଷଢ଼ ଷଢ଼ ଷିଙ୍ଘିଆ                    ବଡ଼ ବଡ଼ ମାଳ ଚୂଡ଼ା
ନଡ଼ ନଡ଼ ଟାହୁଆ ମୁକୁଟ,
ରଡ଼ ରଡ଼ ଧଡ ଧଡ଼                    ନନ୍ଦିଘୋଷ ନୋଷରଡ଼
ପୁଣି ଜଡ଼ ହେଲ କ ହେ ନଟ,
ଧଡ଼ ଧଡ଼,   ଛୁଟ ଥରେ ପାପ ଗାଢ଼େ ବଡ଼,
ଜଡ଼ ଜଡ଼ ଜଣ ଦାନ୍ତ                    ମାଡ଼ ଦେଉ ଯମଦୂତ
ଆଜ୍ଞା ଦେବ ମୃତ୍ତେ ଛୁଡ଼ ଛୁଡ଼ ହେ ।୪

ବାଣୀ କମଳିନୀ ଅଷ୍ଟ-                    ପାଟରାଣୀ ଭୂଷାମଣି
ଫଣି ଫଣା ମଣି ନୀଳମଣି,
ଚନେ ଗର୍ତ୍ତାଳୟା ଏଣୀ                    ଅରଣୀ ଛାପିଲେ ବାଣୀ
ଶୁଣି କମ୍ବୁପାଣି ବଜ୍ରପାଣି,
ଅକ୍ଷମଣି,   ପାଣି ବର୍ଦ୍ଧୁ ହୁଙ୍କାର ହୁରଣୀ,
ଚାଣ ଜନକ ଦୁଲଣୀ                    ଯୁଦ୍ଧେ ବଧି ବଂଶପାଣି
ବସ୍ତ୍ରସଟ ମାଥେ ଛଯ ଟାଣି ।୫

ବାରୁଣୀ ରାଣି ଅରୁଣୀ                    ତରଣୀ କାନ୍ତକ ଜାଣି
ଗଙ୍ଗାଧର ତ୍ରିବେଣୀ ମାଧବ,
ଗଙ୍ଗା ରାଣି ବୀଣାପାଣି                    ଯମ ଭଉଣୀ ତ୍ରିବେଣୀ
ବାରୁଣୀ ଯୋଗେ ସ୍ନାତ ମାନବ,
ଦଣ୍ଡପାଣି,   ଚୁଣି ନ ହେବାକୁ ବାଣୀ ଭଣି,
ଅଣିମାଦ ଅଷ୍ଟନିଧି                    ମଣି ଖଣି କୃପାନିଧି
କଣିକାଏ ଦେବ କୃପାପାଣି ।୬

ଚଙ୍ଗା ଶ୍ରୀପଦୁ ସମ୍ଭୂତ                    ଗଙ୍ଗାଧରରେ ସେବତ
କାଙ୍ଗାଳ ସୁଦାମା ମିଳେ ଧନ,
ନୂଙ୍ଗା ଗୋ-ଗୋଷ୍ଠ କିଶୋର                    ଠେଙ୍ଗା ଶିଙ୍ଗା ବେଣୁଧର
ହେଙ୍ଗାଧମେ ଦେଖି ଘୁଙ୍ଗା ମନ,
ରଙ୍ଗାଧର,   ଭଙ୍ଗା ଡଙ୍ଗା ବୁଡ଼େ ଭବାବ୍ଧିର,
ଡେଙ୍ଗା ଯମଚର ଠେଙ୍ଗା                    ନପିଟୁ ନକର ମଙ୍ଗା
ରମା ସଙ୍ଗାତରେ ଏ କଙ୍କର ।୭

—o—

# ନୀଳାଚଳେ ଭକତ ମେଳେ

## ଶ୍ଳୋକ

ସତ୍ୟେ ଧ୍ୟାନ ଯଜ୍ଞାନୁଷ୍ଠାନ ତ୍ରେତାରେ ନର ଧର୍ମ
ଦ୍ୱାପରେ, ଭକ୍ତେ ଭକ୍ତିଦାନ କଳିଯୁଗେ କୀର୍ତ୍ତନ ।

## ଗୀତ

ରାଗ—ରାମକେରୀ

ନୀଳାଚଳେ ଭକତ ମେଳେ ଶଚୀ ଦୁଲାଳ ହରି,
ଗୋପ ଗୋପାଳ ମେଳା ପୁରୀ ଭକ୍ତମେଳେ ବିହରି ।୧

ଶ୍ରୀମନ୍ଦିରେ ସଂକୀର୍ତ୍ତନରେ ହରି ନାମ କୀର୍ତ୍ତନ
ଭକ୍ତେ ଭକ୍ତି ପ୍ରବର୍ତ୍ତନରେ ନାମ ଗାନେ ନର୍ତ୍ତନ ।୨

ବ୍ରଜେ ଶ୍ରୀରାଧିକା ପ୍ରଣୟ ମହିମା ସ୍ୱାଦୁ ସୁଖ ଜୟସୀମା,
ଅଭିଳାଷ ପୂର୍ତ୍ତି କଳିଯୁଗେ ଗୌର ହେଲେ ଶ୍ରୀବ୍ରଜ ଚନ୍ଦ୍ରମା ।୩

ବାହାରେ ରାଇ ଅନ୍ତରରେ ମାଧାଇ ରୂପେ ଶ୍ରୀକୃଷ୍ଣ ଚୈତନ୍ୟ,
କୃଷ୍ଣ ମନ୍ତ୍ରଦାନେ ନାମ ସଂକୀର୍ତ୍ତନ ତାରିଲେ ଭକତ ଜନ ।୪

ଶ୍ରୀକ୍ଷେତ୍ରେ ପ୍ରତାପରୁଦ୍ର ପାପମୁକ୍ତ ହେଲେ ଷଡ଼ଭୁଜ ହେରି
ଧନୁର୍ଦ୍ଧର ରାମ ମୁରଲୀ ବଦନ ଦଣ୍ଡ କମଣ୍ଡଳୁଧାରୀ ।୫

## ଷଡ଼ଭୂଜ ପ୍ରମାଣ

ଶ୍ରୀଚୈତନ୍ୟ କ୍ଷେତ୍ର ବରେଣ ମିଳିତ ପ୍ରତାପରୁଦ୍ର ଅଘ
ନାଶାର୍ଥେ ଦ୍ୱିଭୁଜ ଧୃତଂ ଧନୁଃଶରଂ ରୂପ ରଘୁନନ୍ଦନଂ ।
ତତ୍ପାର୍ଶ୍ୱେ ଦ୍ୱିଭୁଜ ମୁରଲୀ ବଦନଂ ରୂପ ମଦନ ମୋହନଂ
ଶେଷେ ଦଣ୍ଡ କମଣ୍ଡଳୁ ଷଡ଼ଭୁଜ ଶ୍ରୀ ଶ୍ରୀ ଶଚୀ ନନ୍ଦନଂ ॥

———

## ଓଁ ନମଃ ଜୟ ଦୁର୍ଗାୟୈ

ନମସ୍ତେ ଶରଣ ଶିବେ କର ଅନୁକମ୍ପା,
ନମସ୍ତେ ଜଗତବ୍ୟାପିନୀ ଦୁର୍ଗେ ବିଶ୍ୱରୂପା ।

ନମସ୍ତେ ଜଗତ ବନ୍ଦ୍ୟା କମଳ ଶରଣ
ନମୋ ଦୁର୍ଗେ ଜଗତାରଣୀ ତ୍ରାହି ଶରଣଂ ।୧

ନମସ୍ତେ ଦୁର୍ଗେ ଜଗଚ୍ଚିନ୍ତ୍ୟ ମାନ ସ୍ୱରୂପା,
ନମସ୍ତେ ଦୁର୍ଗେ ମହାଯୋଗିନୀ ଜ୍ଞାନରୂପା ।

ନମସ୍ତେ ଦୁର୍ଗେ ସନ୍ତତଃ ଆନନ୍ଦ ରୂପେଣ,
ନମୋ ଦୁର୍ଗେ ଜଗତାରଣୀ ତ୍ରାହି ଶରଣଂ ।୨

ଅନାଥ ଦୀନ ତୃଷାର୍ତ୍ତ ଆତୁର ଜନର
ଭୟଭୀତ ତ୍ରସ୍ତେ ଆଶ୍ରା ତୋ ପଦ୍ମ ପୟର ।

ତ୍ରାହି ମାତଃ ଗଢ ଦାୟୀ ନିସ୍ତାର କାରଣ,
ନମୋ ଦୁର୍ଗେ ଜଗତାରଣୀ ତ୍ରାହି ଶରଣଂ ।୩



## ଶ୍ରୀ ଗଣେଶାୟ ନମଃ

ନମୋ ଗଣେଶ ବିଘ୍ନେଶ ଗିରିଜା ନନ୍ଦନ,
ନମୋ ବିଘ୍ନ ବିନାଶନ ସିନ୍ଦୁର ବନ୍ଦନ ।
ନମୋ ବକ୍ର ତୁଣ୍ଡ ନମୋ ଦେବ ସିଦ୍ଧେଶ୍ୱର,
ନମୋ ବିଦ୍ୟାଧିପତି ପଦେ କୋଟି ନମସ୍କାର ।

## ସ୍ତୋତ୍ରମ୍

ନମୋ ଗଣନାଥ ଦେବ ଅନାଥର ନାଥ,
ନମୋ ଗଜମାଥ ପଦାବ୍ଜେ ରହୁ ମୋର ମାଥ ।୧

ନମୋ ଗଉରୀ ନନ୍ଦନ କପୋଳେ ଚନ୍ଦନ,
ନମୋ ସିନ୍ଦୂର ବନ୍ଦନ ଘେନ ମୋ ବନ୍ଦନ ।୨

ନମୋ ସିଦ୍ଧି ବୁଦ୍ଧି କାନ୍ତ କର କାର୍ଯ୍ୟ ସିଦ୍ଧି,
ନମୋ ସିଦ୍ଧି ବୁଦ୍ଧି ଦାତା ଦ୍ୱର ଜ୍ଞାନ ବୁଦ୍ଧି ।୩

ନମୋ ଗଜ କପୋଳ ଦ୍ୱେ ମୁଁ ଧ୍ୟାନ କପାଳ,
ନମୋ ଶୁଭଫଳ ପ୍ରଦା ଦିଅ ଶୁଭ ଫଳ ।୪

(ନମୋ ବିଘ୍ନରାଜ ଘେନ ଶ୍ରୀପଦେ ଅରଜ )

ନମୋ ବିଘ୍ନରାଜ ହୃତ ସରୋଜେ ବିରାଜ,
ପଦ ରଜ ଦାନେ ଅଜ୍ଞ ନାଶ ମୋ ଅରଜ ।୫

### ଧ୍ୟାନ

ବନ୍ଦେ ବନ୍ଦାରୁ ମନ୍ଦାର, ସିନ୍ଦୂର ଭୂଷଣ ଚନ୍ଦନମ୍ ,
ଅମନ୍ଦା ନନ୍ଦ ସନ୍ଦୋହଂ ବନ୍ଧୁର ସିନ୍ଧୁର ନନନମ୍ ।

ଲମ୍ବୋଦର ବନ୍ଦନ ସୁନ୍ଦର ମେକଦନ୍ତଂ
ରକ୍ତାମ୍ବର ତ୍ରିନୟନ ପ୍ରସନ୍ନ ପ୍ରଶସ୍ତଂ
ଉଦ୍ୟତ ଦିବାକର କରଜ୍ଜ୍ୱଳ ଦନ୍ତପନ୍ତ
ବିଘ୍ନେଶ ସକଳ ବିଘ୍ନହର ନମାମି ।

## ୧ମ ଧ୍ୟାନ ଗୀତ

ନମୋ ଲମ୍ବୋଦର ବଦନ ସୁନ୍ଦର-
ଏକ ଦନ୍ତ ଭକ୍ତାମ୍ବର,
ନମୋ ବିସ୍ତୃନେତ୍ର ପ୍ରସନ୍ନ ପ୍ରଶସ୍ତ
ଆଦିତ୍ୟୋଜ୍ଜ୍ୱଳ ସୁନ୍ଦର ୧।
ପ୍ରଭୁ ବିଘ୍ନେଈଶ ସର୍ବ ବିଘ୍ନ ନାଶ
ସ୍ଥୂଳ ବଦନ ଗଜାସ୍ୟ,
ବନ୍ଦେ ଶୈଳ ସୁତା ସୁତ ଗଣନାଥ
ସିଦ୍ଧି ପ୍ରଦା ଗଣଈଶ ।୨

## ୨ୟ ଧ୍ୟାନ

ନମୋ ଖର୍ବ ସ୍ଥୂଳତନୁ ଗଜାସ୍ୟ ଶ୍ରୀ ଲମ୍ବୋଦର,
ଗଣ୍ଡ ଗଳିତ ମଧୁ ଗନ୍ଧ ଲୋଭେ ମଧୁପ ବ୍ରାତ ।୧
ଦନ୍ତ ଅଗ୍ର ରକ୍ତେ ରଞ୍ଜିତ ଶୋଭା ସୁନ୍ଦର ଶିଷ୍ଟ,
ବନ୍ଦେ ଗିରିଜା ସୁତ ସିଦ୍ଧିଦାତା ଅଜ୍ଞାନ ହର ।୨

## ଗଣେଶ ଦ୍ୱାଦଶ ନାମ ସ୍ତୋତ୍ରମ୍

(ବହଇ ମନ ଆରେ ମୋ ବୋଲ କର—ବୃତ୍ତେ)

ପ୍ରଣତ ଶ୍ରୀପଦେ ଗଉରୀ ନନ୍ଦନ,
ସିଦ୍ଧି ପ୍ରଦାୟକ ଦେବ ପୂଜ୍ୟ ଗଜାନନ ।୧
ଯଶଶ୍ରୀ ଆୟୁଷ ବିଦ୍ୟାଦାତା ବିଘ୍ନେଶ୍ୱର,
ଦ୍ୱୈମାତୁର ହର କୁମର ମୋ ଦୁଃଖ ହର ।୨
ପ୍ରଥମରେ ବକ୍ରତୁଣ୍ଡ ଦ୍ୱିତୀୟେ ଏକ ଦନ୍ତ,
ତୃତୀୟେ କୃଷ୍ଣ ପିଙ୍ଗଳା ଚତୁର୍ଥରେ ଗଜବକ୍ତ୍ର ।୩
ପଞ୍ଚମରେ ଲମ୍ବୋଦର ଷଷ୍ଠରେ ବିକଟ,
ସପ୍ତମରେ ବିଘ୍ନରାଜ ଧୂମ୍ର ବର୍ଣ୍ଣ ଅଷ୍ଟ ।୪
ନବମରେ ଭାଲେ ଶଶି ଦଶେ ବିନାୟକ,
( ଏକାଦଶେ ଗଣପତି ଦ୍ୱାଦଶେକ )
ରୁଦ୍ରେ ଗଣପତି ଗଜାନନ ଦ୍ୱାଦଶେକ ।୫
ଏ ଈଶଦ ଗଣେଶ ଦ୍ୱାଦଶ ନାମ ସ୍ତୁତି,
ତ୍ରିସନ୍ଧ୍ୟା ପଠନେ ବିଦ୍ୟା ଲଭଇ ବିଦ୍ୟାର୍ଥି ।୬
ସର୍ବବିଘ୍ନ ବିନାଶକ ବିଘ୍ନରାଜ ସ୍ତୋତ୍ର,
ସର୍ବ ସିଦ୍ଧି ପ୍ରଦ ଦୁଃଖ ତମ ନାଶେ ମିତ୍ର ।୭



# ପଞ୍ଚଦେବତା ବନ୍ଦନା

ଶ୍ଳୋକ

ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା,
ଲମ୍ବୋଦର ହରିହର ମାମିହ ପ୍ରଣମାମ୍ୟହଂ ।

## ଗୀତ—

ରାଗ—ରସକୁଲ୍ୟା

ତୁଣ୍ଡ ବକ୍ର ବିଘ୍ନରାଜ ଖଣ୍ଡ ଶଶୀ ମୌଳି ଦେବ ଅରଜ
ତାଣ୍ଡବ ନୃତ୍ୟକାରୀ ଶିବାତ୍ମଜ ମଣ୍ଡନ ସିନ୍ଦୁର ଗଣ୍ଡ ସରୋଜ,
ଖଣ୍ଡ ଚଣ୍ଡ ପିଣ୍ଡ ଦ୍ୱିଜ,
ଦଣ୍ଡ ଦଣ୍ଡ ଗଜମୁଣ୍ଡରେ ଅରଜ, ନ ଦଣ୍ଡ ରବ ତନୁଜ ।୧

ଗଜାର୍ତ୍ତିହାରୀ ଦେବ ଚକ୍ରଧାରୀ ଲଜ୍ୟାର୍ତ୍ତିରୁ ତାରି ପାଣ୍ଡବ ନାରୀ,
କୁଜାରେ ହୃଜା କରିଲ କଂସାରି ଅଜାମିଳ ମହାପାପି ଉଦ୍ଧାରି,
ଧ୍ରୁବା ଭକ୍ତେ ଆର୍ତ୍ତିହାରୀ,
ବ୍ରଜାଭରି ରାଣ ହରି ଅର୍ତ୍ତିଯାଣ ଶୁଣ ଏ ଦୀନ ଗୁହାରି ।୨

ଶିବ ଶିବ ପ୍ରଦ ଉମାଶଙ୍କର, ଭବ ଭବ-ତାପ ନାଶ ଈଶ୍ୱର,
ଧବ ଧବଳ ଗିରି ଅଧିଶ୍ୱର ଦେବ ଦେବ ହର ଦୁର୍ଦ୍ଦଶା ମୋର,
ଶବ ଭବନ ବିହାର,
ଜୀବ ଜୀବଧବ ଭସ୍ମ ହରଣରେ ପୂଜେ ଦେବା ସୁର ନର ।୩

ମାତ ଦୁର୍ଗେ ଦୁର୍ଗତି ବିନାଶିନୀ, ମାତଙ୍ଗୀନୀ ରୂପା ସିଂହବାହିନୀ,
ଶତ ପୁତ୍ର ନେହା ଜଗଜ୍ଜନନୀ, ସୁତା ଶତ ଦୋଷ କ୍ଷମ ଭବାନୀ,
ଜାତରେ ଭଲେ ଦୟିନୀ,
ଦତ୍ତକର କୃପାମୃତ ଜଗନ୍ମାତା, ସୁଧା ସୌଭାଗ୍ୟ ଦାୟିନୀ ।୪

ତନନାଥ ଦେବ ଛାୟା ରମଣ, ଦୀନନାଥ ବରିଷ୍ଠ ନାରାୟଣ,
ବନଜ ବାନ୍ଧବ ଜଗତ ପରାଣ, ଧ୍ୟାନ କରେ କର ଦୁଃଖହରଣ,
ହରିଚନ୍ଦନ ଶରଣ,
ହେରମ୍ବ, ଅଚ୍ୟୁତ, ଶିବ, ଶିବାଦିତ୍ୟ କରବାରେ ପରିତ୍ରାଣ ।୫

## ଶ୍ଲୋକ

ସଦ୍ ବୃନ୍ଦାବନ କୌତୁକ ପ୍ରବନ୍ଧପତଃ ଶ୍ରୀଯତ୍ୟସ୍ତମୋ ଦସ୍ୟୁ,
ସତ୍ତୋଃକୃଷ୍ଣ ଯଶୋଦସ୍ୟା ଦୃତ ତନୁ ଯୋ ଦାନବାସ୍ତ ପ୍ରିୟ,
ସନ୍ତୁଷ୍ଟା ଦ୍ୱିଜରାଜ ମୋଦ ଜନକଂ ନେତ୍ରା ନନା ଉଷ୍ଟୁତଂ,
ସମାହୃନ୍ ନବେଦତା ସମତସ୍ୟା ପାସ୍ମାଦ ପାସ୍ମାଙ୍କର ।

ଦେଶା କନ୍ତ୍ରାଳକାଶାଗ୍ର କରକାସ୍ତ ପୀନାକନଃ,
ବ ବଡୋ ପତସ୍ୟୋ ଦଧ୍ୟୋ ସ୍ୟ ବା ଜମ୍ଭୁ ନାରାକାଶଃ ।

ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ
ବଳଭଦ୍ର ସୁଭଦ୍ରାୟ ଜଗନ୍ନାଥାୟତେ ନମଃ ।

## ଗୀତ—

ନୀଳାଚଳ କଳାକର କଳା କାହ୍ନୁ ଶ୍ରୀକର
ନୀଳାମ୍ବୁଧି ବେଳାଭୂମେ ନୀଳାନିଧି
ନିତ୍ୟ ନୀଳାକର କରୁଣାକର । ପଦ।

ଦନାଞ୍ଜନ ନୀଳ ତମାଳାଭ କଳା
ବଙ୍କା ନବକା ଦଳା କାନ୍ତ ସୁନ୍ଦର,
ବଳାନୁଜ ସ୍ୱଲାରୁଧ ଭଦ୍ରା ସଙ୍ଗ
ବନ୍ଦେ କମଳାକ୍ଷ କମ୍ବୁ ନେତ୍ରର ।୧



## ଓଁ କୁରୁକ୍ଷେତ୍ର ମିଳନ ଓ କୁରୁକ୍ଷେତ୍ର ରାଧାଙ୍କ ସହ ରାସୋଲ୍ଲାସ ପ୍ରକରଣ

(ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧେ)

### ଗୀତ

ରାଗ—ବଙ୍ଗଳାଶ୍ରୀ

ରସରାଜ ଶ୍ରୀଶଃ ଶ୍ରୀପଦ ସାରଦ ଭଜ ଏ ଯେନ ବିଦୁଷ,
ଲୋକେଶ ମହେଶ ସୁରେଶ ଗଣେଶ ଯାର ନ ପାଇଲେ ଲେଶ ।୧

ଶେଷରେ ଅଶେଷ ବର୍ଣ୍ଣିନେ ବିଶେଷ ଯେଉଁ ନିତ୍ୟ ରାସ ରସ,
ଶ୍ରୀପସ୍ବର ଦାସ ଶୁକଦେବ ବ୍ୟାସ ବର୍ଣ୍ଣିତ ଏ ଭକ୍ତି ରସ ।୨

ଭକ୍ତଙ୍କ ପିୟୂଷ ବିଷସ୍ବାର ବିଷଃ ଅଶେଷ କଳୁଷ ନାଶ,
ଏ ରସ ନିର୍ଯ୍ୟାସ ଶ୍ରବଣରେ ତୋଷ ଲଭ କୃଷ୍ଣ ନିତ୍ୟ ଦାସ ।୩

ଦ୍ୱାରପାଳ ଯାସ ଦେଇ ପୂର୍ଣ୍ଣବ୍ରାସ ଶାପେ ଲଭି ମହାତ୍ରାସ,
ବୈକୁଣ୍ଠ ନିବାସ ଛାଡ଼ି ନିତ୍ୟାବାସ ମର୍ତ୍ତ୍ୟେ ଜନ୍ମିଲେ ରାକ୍ଷସ । ୪

କରୁଁ ଦ୍ୱେଷ ଈଶ ହେଳେଶ ସୁରେଶ ଦେବ ଜଣାଇଲେ କ୍ଲେଶ,
ହରି ଶେଷ ଶେଷ ସୁରବଦ ରାକ୍ଷସ କଲ ହିତ ବନ୍ଧୁ ବେଶ ।୫

ଦଶ ଦିଶ ଈଶ ସାକ୍ଷୀ ଦଶ ଦୋଷ ମାଗି ମିଥିଳା ନରେଶ,
ଦଶରଥ ଶିଷ ରାମେ ବୈଦେହୀଶ ପଦେ କନ୍ୟାଦାନେ ତୋଷ ।୬

ବନବାସ ବାସକାଳେ କଷ୍ଟାବାସ ଭଦ୍ର ଲେପି ଲଙ୍କା ଈଶ,
ଛପି ଉପବାସ ଭିକ୍ଷା ଉପବାସ ସତୀ ଆଣି ଯତ୍ନ ପାଶ ।୭

ଭିକ୍ଷା ଦେଇ ସତୀ ହରିଲ ଦୁର୍ମତି ଜାଣି ରଘୁକୁଳ ଇନ୍ଦୁ,
ସୁଗ୍ରୀ ବାତସୁତ ଋକ୍ଷ କପିଯୂଥ ବଳେ ସେତୁକୃତ ସିନ୍ଧୁ ।୮

ପୌଲସ୍ତ୍ୟ ସଗୋଷ୍ଠ ଗାଣ ପୁତ୍ର ପୌତ୍ର ମିତ୍ର ବଧି ରାମଚନ୍ଦ୍ର,
ଉଦ୍ଧରିଲେ ସୀତା ବିଭୀଷଣେ ଛତ୍ର ଟେକାଇଲେ ଯେତା ଇନ୍ଦ୍ର ।୯

ଦ୍ୱାପରରେ କଂସକେଶି ରକ୍ଷ ବଂଶ ଜନ୍ମି କଲେ ଧର୍ମ ଧ୍ୱଂସ,
ଧ୍ୱଂସ ବୃଷପତି ନିଦଶ ଆରତ ଯତ ସ୍ତୁତି ଶୁଣି ଦଶ ।୧୦

ମଥୁରା ସମ୍ଭବ ପୁଣ ବାସୁଦେବ ବସୁଦେବ ଦେବକୀର,
ଶୌ ଗୋଷ୍ଠ ଚନ୍ଦ୍ରମା ଜାତ ଯେହ୍ନ ଉମା ଗୋପେ ଯଶୋଦା ଗର୍ଭର ।
ବନ୍ଦୀ ପିତଃ ମାତଃ ବନ୍ଦୀଶାଳେ ପୁତ ବଧ କାଢ ସୁଖି ଦୁଃଖି,
ହେ ଅରକ୍ଷ ରକ୍ଷ ତୋତେ ରୁଦ୍ର ରଖ ରକ୍ଷ ରଖାଇଛୁ ରକ୍ଷୀ । ୧୨

ବସୁଦେବ ଗୋପେ ବାସୁଦେବ ଗୋପେ ରଖୁ କୃଷ୍ଣ ରୂପେ ଅଙ୍ଗ,
ଅଙ୍ଗେ ଗଲ ମିଳି ଯେସନେ ବିଜୁଳି ଯେସ୍ନେ ସଲିଳେ ତରଙ୍ଗ ।୧୩

ଚଳିଲେ ବିଜୁଳି ଗଡରେ ବିଜୁଳି କନ୍ୟା ଘେନ ବସୁବୀର,
ବନ୍ଦୀ ଘରେ ମିଳି ଦ୍ୱାର ଦେଲ କଳ ଶିଙ୍କୁଳ ଲଗେ ପସ୍ତର ।୧୪

ନ ପାଉ ରଜନୀ କନ୍ୟା କାନ୍ଦଧ୍ୱନି ଶୁଣି ଚେତ ରକ୍ଷୀଗଣ:
ବହିଲେ ଉଦନ୍ତ, କନ୍ୟା ଜାତ ତଥ୍ୟ ମିଳେ ଆସି ଭୋଜଗଣ ।୧୫

ବନ୍ଦୀଶାଳୁ ଭଗ୍ନୀ କୋଳୁ କନ୍ୟା ଆଣି କସ୍ତୃଡ଼ି ଦେଉ ଶିଳାର,
ଝଟେ କରୁଗରେ, ଖସି ଆକାଶରେ ରକ୍ଷରେ କହେ କ୍ରୋଧର ।୧୬

ମୁଁ ଲୁହେଁ ତୋ ଅଶ ଅଗ୍ନି ଅଶଧାଗ୍ନି ହ୍ୱର ହ୍ୱରିବେ ଜୀବନ,
ଭଣିକା ସର୍ବାଣୀ ଦେବର୍ଷିଙ୍କ ବାଣୀ ଶୁଣି କଂସ ହତଜ୍ଞାନ ।୧୭

ଚିନ୍ତି କୃଷ୍ଣ ବଧ କ୍ରୋଧରେ ଜବୋଧ, ଗୋପନେ ଗୋପ ନଗର,
ଷଣ୍ଢା, ତୃଣା, ବକା, ଅର୍ଘାଦ, ଶକଟା ପେଶିଲ କୃଷ୍ଣପାଶର ।୧୮

କେଶୀ, କଂସଭ୍ରାତ ଯେ ପୂତନା ଧାଇ ଯେତେ ବୀର ବ୍ରଜପୁର,
ସର୍ବେ କୃଷ୍ଣ ହତ ହେବାରୁ ଚିନ୍ତିତ ମୃତ୍ୟୁ ଚିନ୍ତେ ଭୋଜବୀର ।୧୯

ବାଳେ ଶ୍ରୀଇ ରାମ ସୁବଳ ସୁଦାମ ସଖା ସଙ୍ଗେ ଧେନୁରଖା,
ଭଞ୍ଜନ ଯାମଳା କାଳି ନାଗ ଦଳା ଗୋବର୍ଦ୍ଧନ ଗିରି ଟେକା ।୨୦



## ୨ୟ ଛାନ୍ଦ

## ଗୀତ—

ରାଗ—ଶ୍ୟାମକେଶୀ

ରଥ ଦେଖି କହେ ଦୂତର ଆଗର ହୋଇ କାତର,
ଇତର ନମଣି ଶୁଣକ ସଖା ଭସ୍ତ କରେ ଚଉର ।୧

ବୃନ୍ଦାଭ ନନ୍ଦ ଯଶୋମତି ତା ତାତର ମାତର,
ରତ୍ନର ଆଣିବୁ ତରୁର ରୁ ମୋ ମହାପାତର ।୨

ମଥୁରା ଛତରପତି ମୁଁ ଏ ମୋ ଆଜ୍ଞା ପତର,
ଇତର ନ ମଣି ପୁତର ସଙ୍ଗେ ରଙ୍ଗ ଯାତର ।୩

ଖାତର ବଢ଼ିବ ହଉର କାଳକୁ ଅତୁତର,
ଖାତର ନଷ୍ଟବ ଈଶ୍ବର ଦେଖିବ ମୁଁ ମାତର ।୪

ଅଦ୍ଭୁତର ଲୁଚନ୍ତେ ହୁତର କଣ୍ଠ ଆସିବୁ ତର,
ଭୂତର କ ଭବିଷ୍ୟତର ଅବା ଉପସ୍ଥିତର ।୫

ଶ୍ରୀମୁଖ ପତର ମୁଦ୍ରଣ ନେଲ ଦୂତ ପ୍ରବର,
ନିପୁର ଠାକୁର ଦେଖିବା ବ୍ରଜ ଗଲ ଅକ୍ରୂର ।୬

ବନ୍ଧୁ ହଟକାଇ ଅଟକ ଖଣ୍ଡା ଜଗ ଦ୍ୱାଟକ
କଂସ ରାଟଙ୍କର ପାଟକ ଶିଖା ବାନ୍ଧ ଘଟକ ।୭

ଗୋପ ପାଟକ ଶ୍ରୀ କାଟକ ମିଳେ ଗୋପ ଜଟକ,
ଫାଟକ ଦ୍ୱାରରେ ମିଳଣ କହେ ବ୍ରଜ ନାଟକ,
ପଟକ ପକାଇ ନଟକ ଗିଦେ ମଧୁ ଭଟକ ।।୮

ମନ୍ଦ କାଳ ,କାଳ ଦୁର୍ବଳ ମୁଚୁକୁନ୍ଦେ ଦ୍ୱନ୍ଦର,
ଜରାସନ୍ଧ ଶର ସନ୍ଧାନେ ଦ୍ୱାରେ ଅବନନ୍ଦର ।୯

ମଧୁଦ୍ୱାର ମଧୁପୁର ବରଜ ଦ୍ୱାରବତୀର,
ରାଜ ଦୁର୍ଗ ରଚ ବରାଜ ମାନ ବ-ରାଜବର ।୧୦

ଦ୍ୱଜାର ଦ୍ୱଜାର ରାଜାର ତନୁଜାଙ୍କର କର,
ଉଦ୍ଧବ ଦୃଷ୍ଟ ଶ୍ରେଷ୍ଠ ବଂଶୀ ଜେମା ବକ୍ଷ ବଧିର ।୧୧

ପ୍ରିୟତମା ଶ୍ରୀ ସତ୍ୟଭାମା ପାଟରାଣୀ ରୁକ୍ମିଣୀ,
ଏଣୀ ରକ୍ଷଣି ବାଣୀ କମଳିଣୀ ରୂପା ସିଦ୍ଧାଣୀ ।୧୨

ଷୋଳ ହଜାର ଅଷ୍ଟୋତ୍ତର ସଙ୍ଗ ରାଜ ସୁତାର,
ସନ୍ତତ ବିହାର ନାଗରବର ଦ୍ୱାରବଟରେ ।୧୩

ତଥି ମଧ୍ୟେ ଶତ ମସ୍ତକ ଶ୍ରେଷ୍ଠା ରାଜକୁମାରୀ,
ଶତ ଅଷ୍ଟେ ଶ୍ରେଷ୍ଠା ପ୍ରିୟସୀ ଅଷ୍ଟପାଟ ସୁନ୍ଦରୀ ।୧୪

ମାତ୍ର ସତ୍ୟଭାମା ଶ୍ରୀକୃଷ୍ଣ ସଙ୍ଗେ ରଙ୍ଗେ ବିହାର,
କିନ୍ତୁ ବ୍ରଜ ପ୍ରେମ ଉଚେଷ୍ଟା ଜାତ ସଦା ହୃଦର ।୧୫

ରାଧା ରାଧା କେବେ କନ୍ଦନ କେବେ କ୍ରୋଡ଼ ମହନ,
ରାଧା ଭାବ ବାଧା ଉଠଇ ଅଙ୍ଗ ଅନଙ୍ଗ ବାଣ ।୧୬



## ଜମ୍ବୁ ଛାଡ଼

## ଗୀତ

(ମହାବାହୁ ଜଗାଣ — ବୃନ୍ଦେ)

ନବ ନୀରଦ ବରନ    ନବ କିଶୋର ସ୍ୱରୂପ
ନବ ନବ ରେଖା ଅନ ଅନ,
ଛନ ଛନ ସଦା ମନ    ବଦନ ନୟନେ ବଁ
ଘନକେଶୀ ବନେ ଶ୍ୟାମଘନ କ୍ରେ,
ଘନ ଘନ, ମନ ମନ ମଥର ମନ୍ଥନ,
ଜନ ବନ ରାଜ ରାଧା ଧ୍ୟାନ,
ନିର୍ଜନ ସ୍ଥାନ ଆସୀନ    ବର୍ଜନ ପାନ ଭୋଜନ,
ଶୟନ, ମହନରେ ରୋଦନ ।୧

ପିତା ନନ୍ଦ ଯଶୋମତୀ — ଲଳିତାଦି ସଖୀପନ୍ତ
ଗୋପ ଯନ୍ତ୍ର ପଡ଼ନ୍ତୁ ମନ,
ସ୍ୱନୁଗ ସ୍ୱନୁକ ପତ — କୁନ୍ତଳ ଗଣ୍ଡ ପୀରତ
ଚନ୍ଦ୍ର ମଣ୍ଡ ବଦାର୍ଣ୍ଣ,
ବଂଶୀଧର ! ଚରଣୀ ଶୋଭ ମୟୂରଧର,
ମଧୁ ମଧୁକର ରଙ୍ଗାଧର
ଢାଳ ଢାଳ ମାରତର — ଜରଧରଙ୍କ ହୃଦର
ଦରଦେ ଅଧର ଦାମୋଦର ।୨

ଦଳିତାଞ୍ଜନ ଗଞ୍ଜନ — ଭଞ୍ଜନ ଜନ୍ତୁ ଅନନ
ଅନନ୍ଦ ଭଞ୍ଜନ ଅସ୍ତ୍ର ଜାଣି,
ଖଞ୍ଜନ ନେଣା ରୁକ୍ମଣୀ — ସତ୍ୟଭାମା ଧର ପାଣି
ବାଣୀ ଭଣି କ ନ୍ରୋ ନୃମଣି ହେ,
ନ୍ରୋମଣି, ଅଗଣିତ ବ୍ରହ୍ମାଣ୍ଡ କାରଣୀ,
ଗଣି କେ ପାରବ ଯଣ ଶ୍ରେଣୀ,
ଅଷ୍ଟ ଅଷ୍ଟାଦଶ ନଧି — ସିଦ୍ଧି ମହିମା ବାରଧି
ଜି ପୂରଧି କ ବ୍ୟାଧି ପୁଣି ହେ ।୩

ପ୍ରିୟା ବଚନ ରଚନ — ବଚନ ସ୍ଥନେ ମଦନ-
ମୋହନ ମାନଭରେ ମଜ୍ଜନ,
ପୁନଃ ପୁନଃ ପ୍ରିୟା ଦୈନ୍ୟ — ପ୍ରାର୍ଥନାରେ ଜନାର୍ଦ୍ଦନ
ସ୍ୱପେ ମୋ ଜବନ ମନ ଧାନ ରେ,
ଜବଧନ, ଯମୁନା ପୁଳିନ ବୃନ୍ଦାବନ,
ଗୋପୀ ଗୋ ଗୋପ ନନ୍ଦନ,
ରମା ଉମାର ବନ୍ଦନ — ଜେମା ମଣ୍ଡଳି ମଣ୍ଡନ
ରାଧା ଚିନ୍ତାରେ ବାଧା ମୋ ପ୍ରାଣରେ ।୪

ଅକ୍ରୁର ସଙ୍ଗେ ମୁଁ ରଙ୍ଗେ — ରଙ୍ଗଯାତ୍ରାର ପ୍ରସଙ୍ଗେ
ବ୍ରଜ ତେଜି ଆସୁ ମଧୁପୁରୀ,
ବାତ୍ସଲ୍ୟେ ଯଶୋଦା ନନ୍ଦ — ଗୋପ ସଖା ସଖୀବୃନ୍ଦ
ଲଳିତା ବିଶାଖା ଚନ୍ଦ୍ରାବଳୀ,
ପ୍ରାଣାଧିକା, ରାଧିକା ମୋ ସ୍ୱନୁର ଦୁଲାଳୀ,
ନେଶୁ ନର ଢାଳ ଗଡ଼ ଧୂଳି,
କାନ୍ଦନ୍ତି ହେ ବ୍ରଜନାଥ — ଆମ୍ଭଙ୍କୁ କରି ଅନାଥ
ରଥରେ ଯାଉଛ ବସି ଚଳି ହେ ।୫

ଶ୍ରୀପଥ ବିରହାନଳ          ସମିଧ ଗୋପଲଳନା
ଆଦ୍ୟମାଳ କଂସ ମନ୍ତ୍ରାବଳ,
ଦୃଢ ପ୍ରଭଞ୍ଜନା ନୀଳ          ପ୍ରଜ୍ୱଳନରେ ଅବାଳ
ବୃନ୍ଦା ନାସ୍ତି ବଳଳ ଆକୁଳ,
ବେଳୁ ବେଳ, ଅସମ୍ଭାଳ ଅକଳନା ଦୁଃଖ
ସତ୍ୟସ୍ଥଳ କେ ପାଶବ ଗୋକୁଳ,
ଜାଣି ଅଚଳ ଅଟଳ          ମୋ ବାକ୍ୟ ଶାନ୍ତ ସଳିଳ
ନିଭାଇଲ ଗୋପକୁଳା ନଳ ।

କଂସାଦ ଦୁଷ୍ଟ ଦାନବ          ପ୍ରଚଣ୍ଡ ସେ ଯାଦବ
ମଥୁରା ଦ୍ୱାରକା ଶ୍ରବା ଶ୍ରବ,
ନ ପାଇ ସମସ୍ତ ଲବ          ସାନ୍ତ୍ୱନା ଦାନେ ଉଦ୍ଧବ
ବଳଦେବ ପେଷି ବ୍ରଜଭୁବ,
ମୋର ବାକ୍ୟ ସତ୍ୟ ଧ୍ରୁବ          ନ ରହି ମୁ ବ୍ରଜଭୁବ
ପେଷିଲ ଉଦ୍ଧବ ବଳଦେବ ହେ,
ବ୍ରଜସ୍ତବ, ଶୁଣି ପିଣ୍ଡେ ରହେ ମୋ ଜୀବ,
ଦର୍ଶନ ଆଶେ ଗୋପ ସବ,
ଅଛନ୍ତି ଜୀବରେ ଜୀବ          ଜୀବନେଶୀ ରାଧାସ୍ତବ
ଜୀବଧବ ପୁରେ ନର୍ତ୍ତେ ଶିବ ।୭

ଶୃଙ୍ଗାର ରସଶେଖର          କର ଧର ସମାଦର
ଗୀର ଉଚାଟ ସ୍ୱଦେଶର,
ରସ ତରଙ୍ଗିଣୀ ରାଧା,          ଦର୍ଶନେ ବଡ଼ ଶ୍ରଦ୍ଧା
ଦ୍ୱିଧା ନ କରଣ ସୁଧାକର,
ଧେନୁରକ୍ଷା, ବ୍ରଜେ ରାଧା ସୁଧାଧର ଚଖା,
ସଖା ସଖୀ ଲଳିତା ବିଶାଖା,
ଲକ୍ଷ ନେଇ ଶିକ୍ଷି ଭିକ୍ଷା          ମଣିରକ୍ଷା ନୋହି କକ୍ଷା
ଭିକ୍ଷା ବ୍ରଜ ପ୍ରେମ ଦକ୍ଷା ଦେଖା ହେ ।୮

ବନ୍ଧେ ଶତ ପୁତ୍ର ନେବେ ଅସ୍ତ ତେଜ ସତତେ
ଅନଂସ ଗମନ ଅନୁଚର
ଯଦୁ ଗୋପିନ ପୁତ୍ର କଳସ ଅମୀସ ଦୈତ୍ୟ
କଂସମିସ ଦନ୍ତ ବଳବନ୍ତ
କୁରୁକ୍ଷେତ୍ର, ଭୃଗୁ ପୁତ୍ର କୃତଘ୍ନତ କ୍ଷତ୍ର,
ରକ୍ତପ୍ରିୟ ତର୍ପିତ ପବିତ୍ର ।୮

କ୍ଷେତ୍ରବରେ ସ୍ନାତ ମିତ୍ର ସାସ ସିଂହପୁତ୍ର ଗ୍ରସ୍ତ-
ହୃତ ଅପବିତ୍ରତା ହୃତରେ ପବିତ୍ର
କ୍ଷେତ୍ର ସ୍ନାତମିତ୍ର ଗାତ୍ର ତମଗ୍ରସ୍ତ ଅପବିତ୍ର
ହୃତରେ ପ୍ରାପତ ସୁପବିତ୍ର ।
ସୂର୍ଯ୍ୟଗ୍ରହଣ ଆପନ୍ନ କୁରୁକ୍ଷେତ୍ରେ ସ୍ନାନ ଦାନ,
ଅର୍ଚ୍ଚନରେ ପାପ ବିମୋଚନ,
ଆଗତ ଭାରତ ଜନ ନଷ୍ଟେ ଗୋପ ବୃନ୍ଦାବନ
ଆଗମନ ହେବେ ଗ୍ରସ୍ତସ୍ନାନ,
ବୀଣାବାଣୀ, କୁରୁକ୍ଷେତ୍ରେ ସିଦ୍ଧ ସର୍ବଗୁଣୀ,
ଭେଟ ହେବ ଶ୍ୟାମର ଦୁଲଣୀ ।୯

ଦ୍ୱାରକା ତାରକାବର ଗୀର ଶ୍ୟାମ ବିମାବର
କୁରୁକ୍ଷେତ୍ରେ ରାଧା ସଙ୍ଗତର,
ଶ୍ୟାମାବର, ନଷ୍ଟପ୍ର ସାକ୍ଷାତ ମର୍ତ୍ତ୍ୟ ମୋର,
ଦ୍ୱାରକା ତାରକାବର ଗୀର ଜଳଧର ନର-
ପାନେ ସୁଖୀ ମହିଷୀ ଚକୋର ।୧୦

# ଜୟ ଜୟ ଦାନବ

## ୪ର୍ଥ ଖଣ୍ଡ

### ରାଗ—କଳସା

ନନ୍ଦ ଆନନ୍ଦଦ ନନ୍ଦ ନନ୍ଦନ ଗୋବିନ୍ଦ
ଗୋପିନାଥ ମଦନ ମୋହନ ବ୍ରଜାନନ୍ଦ ।
ଆହ୍ଲାଦିନୀ ସନ୍ଧିନୀ ସମ୍ବିତ ଶକ୍ତିମାନ,
ଧାମ ଚତୁଷ୍ଟୟେ ପ୍ରିୟ ସ୍ୱୟଂ ଭଗବାନ ।
ଶୃଙ୍ଗାର ରସ ସର୍ବସ୍ୱ ଶିଖି ପୁଚ୍ଛଧାରୀ,
ଧର୍ମାଧର୍ମ ପକ୍ଷ ବିପକ୍ଷକ ଦାନବାରୀ ।
ନିରାକାର ନିରାକାର ଜାତ ବସୁନ୍ଧରୀ,
ପ୍ରଚାରିବା ଅର୍ଥେ ଧର୍ମ ଆପଣେ ଆଚରି ।
ବନ ବନଚର ଦୀନ ରାମ ରାମ ରାମ,
ବୁଦ୍ଧ ବୁଦ୍ଧ କଳଙ୍କି କଳିରେ ଜାତକର୍ମ ।
ଧ୍ୟାନ ଯଜ୍ଞ ପରିଚର୍ଯ୍ୟା ସଂକୀର୍ତ୍ତନ କର୍ମ,
ସତ୍ୟ ତ୍ରେତା ଦ୍ୱାପର କଳିରେ ନୈକ ଧର୍ମ ।

ନବ ଭକ୍ତ ଗୋପୀ

ଗୋପ ବେଶଧାରୀ ଗୋପେ ବିବିଧ ବିଳାସ,
ନବ ଭକ୍ତ ଶ୍ରେଷ୍ଠ ରାଗ ମାର୍ଗେ ରାଧା ବଶ ।
ରାଧା ଆରାଧନା ଭାବ ଭାବନାରେ ଦୀନ,
ଚିନମଣି ଗ୍ରହେ କୁରୁକ୍ଷେତ୍ର ଆଗମନ ।
ବଳଦେବ ବସୁଦେବ ଦେବକୀ ରୋହିଣୀ,
ପଟ୍ଟ ରାଣୀ ଅଗ୍ରଣୀ ସତ୍ୟଭାମା ରୁକ୍ମିଣୀ ।
ଶାମ୍ବ ଗଦ ସ୍ୱରୁଚନ୍ଦ୍ର ପ୍ରଦ୍ୟୁମ୍ନ ଦ ସୁତ,
ଯଦୁ ବଂଶ ଅକ୍ରୂରାଦ କୁରୁକ୍ଷେତ୍ର ଗତ ।
ସେନାପତି କୃତବର୍ମା ଅନିରୁଦ୍ଧ ବୀର,
ସୈନ୍ୟ ସହ ରକ୍ଷା କଲେ ଦ୍ୱାରବତୀ ପୁର ।

ରଥ ରଥି ସାରଥୀ ପଦାତି ଯୂଥପତି,
ହସ୍ତି ବାଜି ଅଗଣିତ କୃଷ୍ଣ ସହ ଗତି,
ଦଣ୍ଡପତି ଖଣ୍ଡପତି ସାମନ୍ତ ନୃପତି
ମଣ୍ଡଳେଶ୍ୱର ଶିଖଣ୍ଡ ଶୂଳବନ୍ତ ଯାତ୍ରୀ ।
ଜନ ମୁଖ ରୋଳ ହ୍ରେଷା ବୃଂହିତ ଚହଲ,
ରଥ ଚତୁର୍ଦ୍ଦୋଳ ଶବ୍ଦେ କମ୍ପେ ରସାତଳ ।
ଅଷ୍ଟରତ୍ନ ବିମଣ୍ଡିତ ରଥ ସୁମଣ୍ଡଣୀ
ହେମ ରଙ୍ଗ ମୁକ୍ତା ରଙ୍ଗ ଲମ୍ବି ଛତ୍ର ଶ୍ରେଣୀ ।

(ମଧ୍ୟଲୀଳା ଚୈତନ୍ୟ ଚରିତାମୃତ ପୃ୭ ଶ୍ଳୋକ ୭କୁରୁକ୍ଷେତ୍ର ମିଳନରେ ରାଧା ଭକ୍ତି)

ବାତେ ଆନ୍ଦୋଳିତ ଶୁଭ୍ର ପୁରଙ୍ଗ ଚମର
ନଭେ ଖେଳା କରେ ଯଥା ଖଣ୍ଡ ମେଘମାଳ ।
କୁରୁନଦୀ କର୍ଣ୍ଣଧାର ପାଣ୍ଡବ ରକ୍ଷଣ
କୁରୁକ୍ଷେତ୍ର ଉପଗତ ନର ନାରାୟଣ
କୃଷ୍ଣା ଆଦେଶରେ ବିଶ୍ୱକର୍ମା କୃତବାସ,
ବାସରେ ନିବାସ ରନ୍ଧଣରେ ପିତୃବାସ ।
ମହାରାସ ଜାଣି କୁରୁକ୍ଷେତ୍ର ସ୍ନାନ ଦାନ,
କୋଟୀ ନରନାରୀ କଲେ ଆଗମନ ।

ତୀର୍ଥ ସ୍ନାନ କୃଷ୍ଣଗତ ପ୍ରାଣ ବ୍ରଜ ଜନ,
ନନ୍ଦ ଗୋପ ଗୋପୀ ମହାତ୍ରହ୍ୱଣେ ଗମନ ।

ବିରାଜ ରାଜବେଷ୍ଟିତ ରାଜ ମହାରାଜ,
ବିରାଜ ତାରକାମ୍ବଜ ଯଥା ତାରା ପୁଞ୍ଜ ।

ଶଶାଙ୍କେଶ ଅପ୍ରକାଶ ବାସର ବାସର,
ଈଶରାସ ଅବସର ଚନ୍ଦ୍ର ଯାତ୍ରୀ ଯାତ୍ରୀବର ।

ନରଙ୍କ ନରକଳ୍ପର ହାରରେ ଦନେଶ,
ଶେଷରେ ଉପବାସରେ ତୀର୍ଥ ସ୍ନାନ ଆଶ ।

ରାସମାନେ ସ୍ନାନ ରାସେ ହୋମ ଆରାଧନ,
ପୂର୍ଯ୍ୟାମାନେ ଦାନ ମୁକ୍ତ ସ୍ନାନ ଅର୍ଘ ଦାନ ।

ସ୍ୱୟଂ କୃଷ୍ଣ ଭଗବାନ ଜଗବର୍ତ୍ମ ସେତୁ :
ତୀର୍ଥେ ସ୍ନାନ ଦାନ ହିତ ଲୋକାଚାର ହେତୁ ।

ଶ୍ଳୋକ

ଯଦ୍ ଯଦା ଚରତ ଶ୍ରେଷ୍ଠ ତତ୍ତ୍ଵଦା ଇତରେ ଜନାଃ
ସଯତ୍ ପ୍ରମାଣ କୁରୁତେ ଲୋକାସ୍ତ ଦାନୁ ବର୍ତ୍ତିତେ ।।

ଗୀତ—

ଗୋ କାଞ୍ଚନ ବସନ ମିଷ୍ଟାନ୍ନ ଦାନ ସାର
ଉପବାସେ ଉପବାସ ପାରଣା ଆଚାର ।

ଯଥାଗତ ସ୍ଵର୍ଣ୍ଣରେ ଭୋଜନ ସାର ଯାତ୍ରୀ,
ଶ୍ରାନ୍ତ ଦୂର କଲେ ନନ୍ଦାଗତରେ ବିଶ୍ରାନ୍ତ ।

କୁରୁକ୍ଷେତ୍ର ଗତ ଯାତ୍ରା ସାର ଯାତ୍ରୀ ଯାତ୍ରା
ଯାତା ଅନୁଗତାଗତ ସାକ୍ଷାତ ବିପଦ ।

କୃଷ୍ଣ ପିତା ମାତା ପୁତ୍ର ସୁତା କାନ୍ତାଗଣ,
କୁନ୍ତୀ ଦ୍ରୌପଦୀ ଯୁଧିଷ୍ଠିରାଦ ସମ୍ଭାଷଣ ।

ଶ୍ରୀନନ୍ଦାଦ ବ୍ରଜଗଣ କୃଷ୍ଣପ୍ରିୟ ଜନ,
କୃଷ୍ଣ ସହ ପ୍ରେମାବେଶେ କରେ ଆଲିଙ୍ଗନ ।

ବ୍ରଜପତ୍ନୀଗଣ କୃଷ୍ଣ କାନ୍ତାରେ ମିଳନ,
ଅନ୍ୟାନ୍ୟ ମିଳନ ନାନା ବାକ୍ୟ ଆଳପନ ।

ଶେଷରେ ବିଶେଷ ସୁବିସ୍ତାର ଲୀଳାମାନ,
କୋଟୀ କବିରେ ପ୍ରକଟି ନୁହେଁ ଏ ଆଖ୍ୟାନ ।



## ୫ମ ଛାନ୍ଦ

### ରାଗ — କଳହଂସ କେଦାର

ଦେବାଦି ଦେବଙ୍କ    ଆଗତ ମଥୁରାଜ
ରାଜ ରାଜେଶ୍ୱରୀ ସମାଜ,
ସୁଜ୍ଞାନ ଦ୍ୱିଜ ଦ୍ୱିଜ    ଶୂଦ୍ର ନାଦ ଅନ୍ତ୍ୟଜ
ସାକ୍ଷାତ ଦ୍ୱିଜଙ୍କ ରାଜ ।୧

ତୀର୍ଥ ଯାତ୍ରୀ କୋଟୀ,    କୋଟୀ, କୋଟି ବିଭୂତି
ଲୁଣ୍ଠାର ହିତ ଯୋଗୀ ଯତି,
ପଢ଼ତା ଚଢ଼ ଗଢ଼,    ଦେଖି ଦ୍ରଷ୍ଟାନେ ଗଣ
ସ୍ୱୟଂସ୍ଥି ଶ୍ରୀକୃଷ୍ଣାଦି କୃଷ୍ଣ ।୨

ବଡ଼େଜ ବ୍ରଜ ବ୍ରଜ    ବ୍ରଜ ଗୋପ ଗୋପିସମାଜ
ସନ୍ତ ବିରାଜ କ୍ଷେତ୍ର ରାଜ,
ଅନାର୍ଯ୍ୟଗ୍ରସ୍ତ ପୂର୍ଣ୍ଣ    ପୂଜନ ପାଦ ଅର୍ଘ୍ୟ
ବ୍ରଜ ସରୋଜ ନେତ୍ର ସୂର୍ଯ୍ୟ ।୩

କୃଷ୍ଣ ଶଶି ବନାଶି    କୃଷ୍ଣ ଅମାବଶି
ବ୍ରଜ ବୃନ୍ଦାରଣ୍ୟ ଶଶି,
ଦ୍ୱାରକା ନଭୁ ଖସି    ଆସି ଏଥେ ପ୍ରକାଶି
ଚୋଖି ଦେଖିବା ବ୍ରଜ ବାସି ।୪

ନନ୍ଦ ଯଶୋଦା ମାତ    ଦର୍ଶନେ ଗୋପିନାଥ
ହସ୍ତାଗତ ଶକଟେ ବସି,
ଗୋପପୁଅ ସହିତ    ରମିତ ସ୍ନେହ ପଥ
ବସୁଦେବ ଦେବକୀ ଆସି ।୫

ଗୋପେଶ୍ୱର ଗୋପ    ଗୋପିକା ସହିତର
ଆମନ୍ତ୍ରି ନେଲେ ସ୍ୱ ବାସର,
କୃଷ୍ଣ ବିଚ୍ଛେଦେ କ୍ଷୀଣ    ଦୀନ ହୀନଙ୍କୁ ଦାନ
ନନ୍ଦନ ରଜନୀ ବାସର ।୬

ବସୁ ଦେଉ ଅପନ　　　　ବସୁନନ୍ଦ ହଛନ୍ତି
ନ ଦେଖି ରାମ ଶ୍ୟାମଘନ,
ଘନ ଘନ ଝନ୍ଦନ　　　　ନନ୍ଦ ଅଷ୍ଟ ନନ୍ଦନ
ଦୁଃଖିରହୁ ଧନ ରେ ।୫
ଜବଧନ ଦେଖି　　　　ପାଉଛୁ ଜୀବନ
ଜୀବନ ସ୍ଥାନେ ଯେସନ୍ତେ ମୀନ,
ଭକ୍ତ ବଂନିତା ଯେନ୍ତ　　　　ବନଜ ପ୍ରିୟଦ୍ୱନ୍ଦ
ସଦନ ଗମନ ଜଦନରେ ।୬
ନନ୍ଦ ଯଶୋଦାରାମ　　　　ଶୁଣି ଶ୍ରୀକୃଷ୍ଣ ରାମ
ସାକ୍ଷାତେ କଲେ ପ୍ରଣାମ,
ଦେଖୁ ରାମ ଶ୍ରୀହରି　　　　ଆନନ୍ଦେ କୋଳକରି
ସ୍ନେହରେ ଦେଲେ ଚୁମ୍ବଦାନ ।୬
ଉପନନ୍ଦାଭିନନ୍ଦ　　　　ନନ୍ଦନ ଯେ ସ୍ୟନନ୍ଦ
ଶ୍ରୀନନ୍ଦା ରଜାନୁଜ ଭ୍ରର,
ସଖି ସଖା ସୁବଳ　　　　ଆଦ ମଧୁମଙ୍ଗଳ
ଗୋପୀ ଗୋପାଳେ ରାମହରି ହେ ।୮
ଯଥାବିଧି ବିଧାନେ　　　　ଦେଖା ଦୟାନିଧି
ବୃଦ୍ଧି ଗୋପ ଆନନ୍ଦାମ୍ବୁଧି,
ବ୍ରଜବନ୍ଧୁ ନାୟିକା　　　　ବଧୂ ବଧୂ ରାଧିକା
ଭେଟିଲେ ବ୍ରଜ କଳାନିଧି ।୯
ଦାବାନଳେ ଦହନ　　　　ଲତାଗଣ ନବୀନ
ଘନ ବନ ପ୍ରାଣ ଯେସନ,
ପ୍ରଫୁଲ୍ଲିତ ତେସନ　　　　ବ୍ରଜ ବନିତାଗଣ
ଦର୍ଶନେ ନବଘନ ଶ୍ୟାମ ହେ ।୧୦
ବ୍ରଜବଧୂ ଦେଖି　　　　ମାନିନୀ ବ୍ରଜ ବଧୂ
ବୋଲନ୍ତି ଦେଖ ମିଳ ସାଧୁ,
କ୍ଷୀର ଦନକୁ କଣ୍ଠ　　　　ଆଣ୍ଟରେ ବଚନ ଦେଇ
ଖଣ୍ଡ ମଥୁରା ମେଣ୍ଟ ରହିଲେ ।
ବଚନ ଦେଇ ଖଣ୍ଡ ବାନ୍ଧି ରହିଲେ ବ୍ରଜବଧୂ ।
ଏବେ ଚନ୍ଦ୍ର ତାହା ପଠାଇଲ ଉଦ୍ଧବରେ
ନିଜ ବାସ ପ୍ରବେଶ ବିଶେଷ ଅଣିବାରେ ।୮

# ଶ୍ରୀହରି

ଆହେ ହରି, ହରିବ ମୋହ କି ? ମୋହରି,
ବ୍ରହ୍ମ ସ୍ୱରୂପେ ବିହରି, ପ୍ରହ୍ଲାଦ ଦୁଃଖ ବିହାରି
ହିରଣ୍ୟ ବଧିଲ ନୃହରି ହେ । ପଦ ।

ନିତ୍ୟ ଗୋଲକ ବିହାରି, ତ୍ରିତାପ ପାପ ସଂହାରି
ଇନ୍ଦ୍ର ଯା ବିବାଦେ ହାରି. ତାଙ୍କ ପିଙ୍ଗଳା ମାହାଙ୍କ
ନ ଶୁଣୁଛ ଏ ଦୀନ ଗୁହାରି ।୧

କି କରି ଥିଲ ସେ କରି, ତାକୁ ଗଲେ ରକ୍ଷାକରି
ଅଗରେ ଛେଦିତା ଅରି, ଅରିନ୍ଦମ ଚକ୍ର ଧରି
ସପ୍ତ ଦେଶ ମଗଲେ ରଖ ହରି ।୨

ମିତ ସୁଦାମାରେ ବନ୍ଧୁ, ଦେଖିକି କୃପା ସାଗର
ପଞ୍ଚତ ଗଲ ପଢିତ, ନାଶି ତୁରିତ ହାଣ୍ଡିତ
ହରି ଚରିତ ସୁଣ ସୁଧା ସୁର ।୩



## ଶ୍ରୀକୃଷ୍ଣାୟ ନମଃ

କମଳ ବାସିନୀ କମଳାକାନ୍ତ ଶ୍ରୀନାରାୟଣ,
କଳ ବେଶ୍ୟଧାରୀ ଗୋକୁଳ କୁଳଦା ରାଧା ପ୍ରାଣଧନ ।୧

ଖଣ୍ଡପରଶୁ ସେବା ଦେବ ପାଣ୍ଡବ ପ୍ରିୟ ହରି,
ଖଣ୍ଡ ଦୁଃଖ ଶିଖଣ୍ଡଚୂଳ କାଣ୍ଡ କୋଦଣ୍ଡଧାରୀ ।୨

ଗଣ୍ଡମଣ୍ଡଳରେ ମକର କୁଣ୍ଡଳ ଶୋଭାବନ,
ଗଣ୍ଡଗୋଳ କରୁ ଦଣ୍ଡକେ ଦୈତ୍ୟେ ଦଣ୍ଡେ ଦୈତ୍ୟନାଶନ ।୩

ଘଟଣ ଶ୍ରୀମୁଖ ଘଟ ଘଟକେ ବିରାଜମାନ,
ଘେନ ବଳଭ ଘନଶ୍ୟାମ ହର ଦୁର୍ଦ୍ଦିନ ଘନ ।୪

ନନ୍ଦ ନନ୍ଦନ ଶ୍ରୀଗୋବିନ୍ଦ ବ୍ରଜ ସୁନ୍ଦରୀବୃନ୍ଦ,
ନେତ୍ରାରବିନ୍ଦ ଚମତ୍କାରୀ ହରି ପରମାନନ୍ଦ ।୫

ଚଞ୍ଚଳେଣ ପଞ୍ଚେଣ ବାଳୀ ଅଞ୍ଚଳ ଦାନେ ତାଣ,
ଚଞ୍ଚଳ ବଞ୍ଚାଇଲ କଷ୍ଟ ଅରି ଧରି ସହରି ।୬

ଛନ୍ଦାପଦ ଧୂଳାଶ୍ରୀତରେ ନଳାମ୍ବୁଜ ହଙ୍କରି,
ଛନ୍ଦାନା ବଳାନୁଜ କଳାମାଣିକ ମୋ ଗୁହାରି ।୭

ଜଳଦାଭ ଜଳଦ ପଦେ ସଜଳ ନେତ୍ରେ ମୁରି,
ଜଳାନା ବଳାନୁଜ କଳାମାଣିକ ମୋ ଗୁହାରି ।୮

ଝାଡ଼ରେ ବିପତ୍ତି ଝଡ଼ରେ ଦୁଃଖେ ଡାକନ୍ତେ ଏଣି,
ଝାଡ଼ବନୋଦଆ ଏଣୀରେ ତାରିଲ ଚିନ୍ତାମଣି । ୯

ଅଳକ ତନୁର ଝଲକ ନାଶେ ନାଗରମଣି,
ଅଳକା ଗୁଚ୍ଛର ଗାନ୍ଥିଅ ଶୋଭ୍ର ନାଗରମଣି ।୧୦

ଟାଳି ବଳୀ ଗର୍ବ ବାମନରୂପେ ଶ୍ରୀ ବନମାଳୀ,
ଟଳି ପଡ଼ କଂସ ବନାଶ ଦେଖି ଶ୍ରୀକୃଷ୍ଣ ହରି ।୧୧

ଠାକୁର ଅକ୍ରୁର ତାରନ୍ତ ଶଙ୍କରରୂପୀ ଶ୍ୟାମ,
ଠକାର ତେଜ ନରାକାର ନର୍ବିକାର ଶ୍ରୀରାମ ।୧୨

ଡାକ ଶୁଣ ଚକାନୟନ ରକାଶଗି ଆନନ,
ଡାକସ୍ତ ନ କରୁ ଶମନ କୃପା କର ମୋହନ ।୧୩
ଢକା ବାଜେ ଟୋକା ପ୍ରହ୍ଲାଦ ଧ୍ରୁବ ଭକ୍ତ ତାରଣ,
ଡାକାଇଲ୍ଲ ବେଳେ ଶ୍ରୀହରି ଭଜି ଯାଉ ପରାଣ ।୧୪
ଅଣାକର ଅଣାସ୍ତୁତ ମୁଁ ଜଣା ଭବ ତମରେ,
ଅଗଣା ଅଜଣା କ ଦାନ ଦୀନବନ୍ଧୁ ଛାମୁରେ ।୧୫
(୧)ତପନଜା ତଟ ବିହାରି ନଟ ନାଗର ହରି,,
ତରୁଣୀ ଶ୍ରୀରାଧାବଲ୍ଲଭ କଳ୍ପବଟ ବିହାରୀ ।୧୬
ସ୍ଥୂଳ ସୂକ୍ଷ୍ମ କାରଣରୂପୀ ବ୍ରହ୍ମମୟ ପୁରୁଷ,
ସ୍ଥଳ ବୃନ୍ଦାବନ ମଥୁରା ନୀଳାଚଳ ନିବାସ ।୧୭
ଦୁଷ୍ଟଣାଶ ଦୁଷଣ ଦୁଷଣହର ଶୋଷଣ ଦୁଃଖ ଘୋର,
ଦୀନବନ୍ଧୁ ଧନବନ୍ଧୁ ଜପାଶ୍ୱ ବନ୍ଧୁ ଉଦ୍ଧର ।୧୮
ଧିଆନେ ଧିଆନେ ବଦନେ ନ ଭଜେ ପଦାରବିନ୍ଦ,
ଧବ ନାମ ଦୋଷ ମାଧବ ପାଦବନ୍ଦ ଗୋବିନ୍ଦ ।୧୯

ଶ୍ରୀ ରାଧା-ମାଧବାଭ୍ୟ ନମଃ

ଶ୍ଳୋକ

ମଧୁସୂଦନ କୃଷ୍ଣଞ୍ଚ ବାସୁଦେବ ଜନାର୍ଦ୍ଦନ,
ଚତ୍ୱାର ତବନାମାନ୍ନ ମହାବିପତ୍ତି ନାଶନ ।

## ଗୀତ—

ହରି ହେ ଦୁଃଖହାରି ଶୁଣ ଦୀନ ଗୁହାରି
ଜୁହାରି ପଦ୍ମମୁଖରେ ଦୁଃଖୀ ଦୁଃଖ ଜଣାଏ ରଖ କୃଷ୍ଣବିହାରି ।୧
ହରି ହରଣୀରେ ତାରି ରାବଣାରି ହେମ ହରଣୀରେ ଅଛ ସହାରି,
ବିଷଧରଶାୟୀ ବିଷଧର ଜୟୀ ନାରୀ ତାରି ନାରୀ ମାରି ଶ୍ରୀହରି ।୨
(୨)ରକ୍ଷମାରି (୩)ରକ୍ଷ ସ୍ୱତ ରାଜଗିରି ବାଲୀ ମାରି ବାଳ ଅନୁଜେ ତାରି,
କରତାରି(୪)କରୀ ବଧିଛ କଂସାରି (୫)ନାରୀ ସୁଶ୍ରୀ (୬)ନାରୀ କଲ କୁ-ଶିରୀ ।୩

---

୧-ତପନ ଜା—ଯମୁନା ନଦୀ । ୨-ରକ୍ଷମାରି—ରାବଣମାରି । ୩-ରକ୍ଷସ୍ୱତ—ବିଭୀଷଣ । ୪-କରୀ ବଧିଛ—କୁବଳୟା ହସ୍ତୀ ମାରି । ୫-ନାରୀ ସୁଶ୍ରୀ—ଅହଲ୍ୟାକୁ ପଥରରୁ ତାରି । ୬-ନାରୀ କଲ କୁ-ଶିରୀ—ସୂର୍ପଣଖା ନାକ କାନ କାଟି ।

# ଶ୍ରୀ ସରସ୍ୱତୀ ଦେବୀ ବନ୍ଦନା

ଜୟମାତ ସରସ୍ୱତୀ, ଘେନ ଧ୍ୟାନ ଧାନ ପ୍ରଣତ
ମା ବଶୁଶ୍ୱରୀ, ଅଗତିର ଗତି
କୁନ୍ଦେନ୍ଦୁ ବରନୀ, ଶ୍ୱେତ ପଦ୍ମାସନୀ,
ବିଦ୍ୟା ପ୍ରଦାୟିନୀ ମା ଭଗବତୀ । ଘୋଷା ।
ଜୟମାତ ସରସ୍ୱତୀ
ଶ୍ରୀପଦେ ମୋ ପ୍ରଣତ
ଶ୍ୱେତ ପଦ୍ମାସିନା, କୁନ୍ଦେନ୍ଦୁ ବରନା,
ଶ୍ୱେତ ପଟ୍ଟାମ୍ବରୀ ମା ଭଗବତୀ,
ଶ୍ୱେତ ବୀଣାପାଣି ବାଣୀ ବୀଣା ଜିଣି
ବାଣୀ ଠାକୁରାଣୀ ପାଣିଜ ନେତ୍ରୀ ।୧
କମଳଧା ସପତଣୀ ନାରାୟଣୀ,
ମଣି ମାଣିକ୍ୟ ରତ୍ନ ହାରାବତୀ,
ବ୍ରହ୍ମେଶ ଶ୍ରୀଶ ଶେଷ ଗଣେଶ ବନ୍ଦ୍ୟ
ମର୍ତ୍ତ୍ୟ ମର ସ୍ୟୁର ଶ୍ରୀ କରନ୍ତି ସ୍ତୁତି ।୨



୧—ପାଣିଜ ନେତ୍ରୀ—ପଦ୍ମନେତ୍ରୀ ।

# ଶ୍ରୀ ନାରାୟଣ ବନ୍ଦନା

## ଶ୍ଳୋକ

ନନ୍ଦ ନନ୍ଦନ ଗୋବିନ୍ଦ ବୃନ୍ଦାବନ କଳାନିଧି,
କୃଷ୍ଣ ଦାମୋଦର ଶ୍ୟାମ ରାଧିକା ପ୍ରାଣବଲ୍ଲଭ ।

## ଗୀତ—

ନମୋ ନାରାୟଣ ବୈକୁଣ୍ଠ ନାଥ ପ୍ରାଣଧନ ଶରଣ ରକ୍ଷଣ,
ଶ୍ରୀଚରଣ ସ୍ମର ପରେ ଭବ ଭବାବ୍ଧି ତାରଣ । ୧

ଦୁଃଖ ନିବାରଣ କାରଣ ତାରଣ ନମୋ ଲକ୍ଷ୍ମୀ ନାରାୟଣ,
ଆର୍ତ୍ତି ଆର୍ତ୍ତିହରଣ ମନ୍ଦର ଧାରଣ ଜଗତତ୍ରାଣ ଦେବଗଣ । ୨

ନିଜଗତ୍ ବନ୍ଦନ, ଚର୍ଚ୍ଚିତ ଚନ୍ଦନ ନନ୍ଦ ନନ୍ଦନ ଗୋବିନ୍ଦ,
ବ୍ରଜସୁନ୍ଦରୀ ପୁରନ୍ଦରୀ ଶ୍ରୀରାଧା ନୟନ ଚକୋରଚନ୍ଦ୍ର । ୩

ହଳାନୁଜ, କଳାକାନ୍ତ, ବଳାହକ ଦଳା କମ୍ବୁକଣ୍ଠ କଳା,
ଚଳାପାଙ୍ଗୀ ନିଳୋତ୍ପଳା, ସ୍ୱାନୁ ଦନୁଜା ନେତ୍ର ପିତୁଳା । ୪

ସଗୁଣ ନିର୍ଗୁଣ ଜଗତ ସରଣ ନମୋ ଲକ୍ଷ୍ମୀ-ନାରାୟଣ ॥

ପ୍ରକୃତିରୂପିଣୀ ବାଣୀ କମଳିନୀ ଭୂଷାମଣି ନୀଳମଣି,
ଅଗଣିତ ଗୁଣିଗଣ ଗଣି ଗଣି ଅନ୍ତ ମହିମା ନ ଜାଣି । ୫



# ଜୟ ଦୁର୍ଗା ବନ୍ଦନା

## ଶ୍ଳୋକ

ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣୀ,
ସର୍ବସ୍ୟାର୍ତ୍ତି ହରେ ଦେବୀ ନାରାୟଣୀ ନମସ୍ତୁତେ ।

## ଗୀତ

ଜୟଦୁର୍ଗା ଦୁର୍ଗତି ତାରିଣୀ ଦୁର୍ଗାୟଣୀ
ଗଡ଼ ମଲପଡ଼ା ଦୁର୍ଗ ଦୁର୍ଗେଶ ବନ୍ଦନୀ
ଚତୁର୍ବର୍ଗ ଫଳଦାୟୀ,
ସ୍ୱର୍ଗ ଭୂନାଗ ତ୍ରିଲୋକ ବନ୍ଦ୍ୟା ଜଗଦ୍ଧାତ୍ରୀ ।୧
ଶର୍ବାଣୀ ଅପର୍ଣ୍ଣା ଶର୍ବଙ୍କ ଅର୍ଦ୍ଧେ ମାତଃ
ଶର୍ବାଣୀ ନନ୍ଦ କୋଟି ଯୋଗିନୀ ସହିତ,
ନାନା ବାଳିକା ରୂପରେ,
ମାର୍ଗ ଦୁର୍ଗମ ଅନ୍ଧାରେ ଭ୍ରମୁ ଜଗତରେ ।୨
ତୋ ମହିମା ଅକଳନ କେ ପାରିବ କଳି
ଦୁର୍ଗୋସ୍ତବେ ଗାଉ ମାତଃ ତୁ ମହିଷ ବଳୀ
ତୋର ମହିମା ଅସୀମ,
ଅଘଟ ଘଟଣ କରୁ ହେ ମହାମହିମ ।୩



## ଶ୍ରୀକୃଷ୍ଣାୟ ନମଃ

ପାମର ରାମର ନାମ ସୁନ୍ଦର
ମର ସଂସାରରେ ଅଛୁ କେ ଅମର ଜନମି ଧନ୍ୟ ଧାମର
ଜନମର ମର ଦେହ ପରିହାର କଥା ନ ଜାଣୁ ଭ୍ରମର
ଅତ ପରମର କଥା ବୃଥା କହୁ ସବୁ ଆମର ଆମର ।୧
ଅମେଧ ପୂର୍ଣ୍ଣ ଏ ନଶ୍ୱର ଶରୀର ଢାଙ୍କୁଣୀ ମାଂସ ଚର୍ମର,
ଜନମର କେତେ ଭ୍ରମର ଅନ୍ତରେ ଡାକରା ହେବ ଯମର ।୨
କେତେ ସମୟର ଲୀଳା ଖେଳା ମାଝେ ଭବେ ଜୀବ ପରଖର,
ଲୋଭ ମୋହ କାମ ତମ ର ବିନାଶେ ଲଭ ପଥ ଧରମର ।୩
କାୟା, ଜାୟା, ଛାୟା, ଜ ସ୍ୱାଦମାୟା, ସାଗରେ ବୁଡ଼ି ନମର,
ଷଡ଼ାରି ତୋର ସେବକୁ ତରିଯିବୁ ଗିରିଧାରୀ ନାମ ସ୍ମର
ନଶ୍ୱର ପ୍ରପଞ୍ଚ ପ୍ରବଞ୍ଚନା କାମିନୀ ମୋହ ସଂହାର ।

# ଶ୍ରୀକୃଷ୍ଣ ସ୍ତୋତ୍ର

(ବିନାଶୁ ନାସା ଶ୍ରବଣ ସୂର୍ପଣଖା—ବୃତ୍ତ)

ଲକ୍ଷଣ—ଆଦ୍ୟ ପ୍ରାନ୍ତ 'ର' ଅନୁପ୍ରାସ .

କର କର ଦର ଶ୍ରୀପଦ କଙ୍କର ଲକ୍ଷାଏ ନାକର ।୧
ଖର ଖରପର ରୁଷି ପ୍ରବରଙ୍କୁ ତାଡ଼ିଲ ଦୁଃଖର ।୨
ଗର ଗର ଚନ୍ଦ କଲ୍ପ ନନ୍ଦ ବନ୍ଦ ନାଶିଲ ନାଗର ।୩
ଘର ଘରଣୀ କମଳା ବାଣୀ ଯ ଶ ବୈକୁଣ୍ଠରେ ଘର ।୪
ଆର ଆରତତ୍ରାଣ କେ ରୂମ୍ନ ବିନା ଅରକ୍ଷ ଙ୍କୁଆର ।୫
ଚର ଚରମକାଳ ଡାକର କାଳେ ପୂଜ୍ୟା ଆଚର ।୬
ଛୁର ଛୁରଝାର ସୂତ ବାଉ ଚନ୍ଦ୍ରା ଗ୍ରସ୍ତରେ ରୁ ଛୁର ।୭
ଜର ଜର ପାପଗିରେ ନରକ ପଙ୍କରେ ନଃ ନଜର ।୮
ଝର ଝର ଅରବିନ୍ଦ ପଦ୍ମରରୁ ଝରେ ସୁଧାଝର ।୯
ନର ନାରକାଗ୍ନି ପାମର ମୁଁ ତାର ଏ ତାପ ଡନର ।୧୦
ଟେର ଟେର ପକ୍ଷୀ ଗରୁଡ ନପାଉ କୃତାନ୍ତ ଆଟେର ।୧୧
ଠାର ଠାର ନରବର ମାରଣରେ ଧାରଣ କୁଠାର ।୧୨
ଡର ଡରଦ୍ୱାର ଡର ପାର କର ବିପତ୍ତି ଝଡ଼ର ।୧୩
ଢେର ଢେର ପାପି ତାପେ ହୁଙ୍କରିଲ ଭକତ ଗାଢ଼େର ।୧୪
ଅର ଅରବିନ୍ଦ ପଦ୍ମର ସୁଦ୍ୱାର ସାଗର ଝିଅର ।୧୫
ତାର ତାରକ ୦ନ୍ତ ଈଶ ନସ୍ତାର କର ନ ଦସ୍ତ୍ରର ।୧୬
ଥର ଥର ବିପତ୍ତ୍ୟା ବିଷ ଗ୍ରସ୍ତ ର ତାର ଅନାଥର ।୧୭
ଦର ଦରଧର ଦୂର କର ଦେଇ ପଦାବ୍ଜ ନଦର ।୧୮
ଧର ଧର ଗଙ୍ଗାଧର ଭବଧାର ତରଙ୍ଗ ହୁଙ୍କାର ।୧୯
ନାର ନାରଦ-ନରଦ-ପଦ ଆଶ୍ରା ସ୍ତବକ ସୁନ୍ଦର ।୨୦
ପର ପରମେଶ ଦଶମାଥ କଂସ ବିନାଶ ପାପର ।୨୧
ଫର ଫର ନେତ ଉଡ଼େ ବିଶ୍ୱନାଥ ପତିତ ପାମର ।୨୨
ବର ବରନ ବରଦ ହେଲ ଧ୍ରୁବ ଶବର ଧୀବର ।୨୩
ଭର ଭର କଳି କାଳି କାଳି ଦଳାଦଳ ସ୍ୱ ପ୍ରଭର ।୨୪

ମାର ମାରବର ତାର ମୋର ଆଗ୍ରା ବ୍ରଜ ଚନ୍ଦ୍ରମାର ।୧୨୫
ଜାର ଜାର ଅନ୍ନ ଦେହେ ଭଷି ଉଜ କଲ କୁବୁଜାର ।୧୨୬
ର ର ରର ସାମ ମୂଳ ମନ୍ତ୍ରାକ୍ଷର ଭୂଷା ସଯାରର ।୧୨୭
ଚଲର ଲୋରହ୍ୱା ନାଶି ସୁଗ୍ରୀବ ଦାସୀ ମୋ ପାଶେ ଆଚଲର ।୧୨୮
ବର ବରକେଶ ଶିଶ୍ୟ ହେଲ ନନ୍ଦ ଭକତ ସ୍ୱବର ।୧୨୯
ଶର ଶରକରେ ଦୁଷ୍ଟା ପୁରବାର ଭଜିଲେ ନାଶର ।୧୩୦
ଶୂର ସୁର ଭୂସୁର ଧରମୋଦ୍ଧାର କନାଶି ଅସୁର ।୧୩୧
ସାର ସାର ସାକ୍ଷୀ ରାଧାପତି ଭକ୍ତିସ୍ଥାନେ ମୁଁ ଅସାର ।୧୩୨
ସ୍ୱର, ସ୍ୱରଷଦ ପଦ ଗଦ ନାଶେ ଏ ଭବ ଜସ୍ୱର ।୧୩୩
କ୍ଷୀର କ୍ଷୀରସିନ୍ଧୁବାସୀ ତବ ନାମ ତୃଷାହ୍ୱା ଦୁଃଖୀର ।୧୩୪
କର ଠାରୁ କ୍ଷର ଅକ୍ଷର ନସ୍ତମେ ବନ୍ଦେ ଶ୍ରୀପସ୍ୱର ।୧୩୫
ସ୍ୱର ସ୍ୱର ସ୍ୱରଚନ୍ଦନର ଭବ ସାର ରମାବର ।୧୩୬

କରଦର—ଶଙ୍ଖହସ୍ତ, ନକର—ସର୍ବଦା । ଖରତାକ୍ଷ—ଶୀଘ୍ର, ଖରପର—ଖର ରାକ୍ଷସର ଶତ୍ରୁ ଶ୍ରୀରାମ । ବୃଷିପ୍ରବର—ଦଣ୍ଡକାରଣ୍ୟ ବୃଷିଗଣ । ଗର ଗର—ଖଣ୍ଡ ଖଣ୍ଡ । ବନ—ଦୁଃଖ । ନାଗର—ହସ୍ତୀର । ଘର ଘରଣୀ—ଗୃହର କର୍ତ୍ତ୍ରୀ । କମଳା—ଲକ୍ଷ୍ମୀ । ବାଣୀ—ସରସ୍ୱତୀ । ଆର—ଆତୁର । ଛୁଆର—ପିଲର । ଚର - ଦୂତ, ଚରମକାଗ—ଶେଷ କର୍ତ୍ତା (ଯମ) । ଗ୍ଲୁର—ହୀନ । ରୂଛାର—ବୃଥାରେ । ଜରଜର - ଜର୍ଜର । ପାପମୀରେ—ପାପଜଳରେ । ମୀରଦ—ପଦ୍ମ-ପସ୍ୱର । ନଃ ନଜର—ଦୃଷ୍ଟିହୀନ । ନରକାଗ—ନରକ ଶତ୍ରୁ ଭଗବାନ । ତାପତନର—ତ୍ରିତାପର । ଟେର—ସମ୍ବାଦ । କୃତାନ୍ତଥାଟର—ଯମ ଦରବାର ଟେରପକ୍ଷୀ—କାକ । ଠାର ଠାର—ଠାବେ ଠାବେ, ବିଭିନ୍ନ ସ୍ଥାନରେ । ନରବର—ଷଣ୍ଢିସ୍ତ । କୁଠାର—କୁରାଢ଼ୀ । ଡରହ୍ୱର—ଭୟଶୂନ୍ୟ । ତେର-ତେର—ବହୁତ । ଦରଧର—ଶଙ୍ଖହସ୍ତ । ଫର ଫର—ଚଞ୍ଚଳ । ମାଫର—କ୍ଷମା ଦେବା । ବର ବରନ—ଉତ୍ତମ ବର୍ଣ୍ଣ । ଶବର—ଜାଗ ଓ ଗୃହକ ଶବର । ଧୀବର—କୈବର୍ତ୍ତ । କଳକାଳୀ—କଳକାଳରୂପୀ ସର୍ପ । ମାର—ମାଡ଼ । ମାର ବର - ଲକ୍ଷ୍ମୀପତି । ଯାର ଜାର ଅନ୍ନ—ଅନ୍ୟର ବିଦୁର ଅନ୍ନ । ଭଜ—ସୁନ୍ଦର । ର—ରାମମନ୍ତ୍ର ମୂଳାକ୍ଷର । ଲୋର—ଲୁହ । ବର—ଶ୍ରେଷ୍ଠ, ବରକେଶ—ବ୍ରଜପୁର ରାଜା । ଶର ଶରକରେ—ଏକ ଶରକେ । ସାର—ଶ୍ରେଷ୍ଠ ସାରସାକ୍ଷି—ସାରସ ପକ୍ଷୀ ଅକ୍ଷି । ଅସାର—ତୁଚ୍ଛ । ଗଦ—ମୂଳ ବିଶେଷ । କ୍ଷୀର—ଦୁଗ୍ଧ । ତୃଷାହ୍ୱା—ତୃଷା ନିବାରକ ।

—୦—

# ନୀଳାଚଳ ବର୍ଣ୍ଣନ

## ରାଗ—କାମୋଦୀ

ବଡ଼ ଦାଣ୍ଡରେ ସୁସଜ୍ଜିତ    ରଥେ ଶ୍ରୀ ବ୍ରହ୍ମାଣ୍ଡନାଥ
ବିଜେ ଭଦ୍ର ଭଦ୍ରାଙ୍କ ସହିତ,
ତାଳଧ୍ୱଜରେ ଅଗ୍ରଜ    ଦେବୀ ରଥେ ଭଦ୍ରା ସଜ
ନନ୍ଦିଘୋଷେ ବିଜେ ଜଗନ୍ନାଥ,
ରକ୍ତ ପିତ୍ତ,  ନୀଳ ପଟ୍ଟବସ୍ତ୍ରେ ଆଚ୍ଛାଦିତ,
ଅଷ୍ଟ ରତ୍ନରେ ଜଡ଼ିତ    ଅଳଙ୍କାରରେ ସୁସଜ୍ଜିତ
ଶୋଭା ଗଞ୍ଜେ କୋଟି ଚନ୍ଦ୍ରାଦିତ୍ୟ ।୧

ଶ୍ରୀ ପ୍ରତାପରୁଦ୍ରଦେବ    ଉତ୍କଳ ଭୂଖଣ୍ଡ ଭୂଦେବ
ଗଜପତି, ପୂଜନେ ଶ୍ରୀପତି,
ଚନ୍ଦନ ସୁବର୍ଣ୍ଣ ପାତେ    ସ୍ୱର୍ଣ୍ଣ ସମାର୍ଜିନୀ ହସ୍ତେ
ରଥ ଗଡ଼ପଥ ସମାର୍ଜନ୍ତି,
ଟଜପତି,  ଚଳନ୍ତି ଶ୍ରୀ ଜଗନ୍ନାଥ ମୂର୍ତ୍ତି ।୨

ଦ୍ୱାପର ନନ୍ଦ ନନ୍ଦନ    ଅଭିଳାଷ ନି ପୂରଣ
ଅର୍ଥେ କଳିଯୁଗେ ଶ୍ରୀଚୈତନ୍ୟ
ଦ୍ୱାପରେ ମୁରଳୀ ପାଣି    ରାଧା ପ୍ରେମେ ହୋଇ ଋଣୀ
ଭାବି ରାଧା ପ୍ରେମର ମହିମା,
ମଧୁରିମା ଲଭେ ସୁଖି    ଲଭିବ କେମନ୍ତେ ଚନ୍ଦ୍ରମୁଖୀ
ଏ ଚିନ୍ତାରେ ଗୋ ଗୋଷ୍ଠ ଚନ୍ଦ୍ରମା
କଳିଯୁଗେ ଶ୍ରୀକୃଷ୍ଣ ଚୈତନ୍ୟ
ନୀଳାଚଳେ ଶଚୀବାଳା    ଭକ୍ତ ମେଳେ କୃଷ୍ଣ ଲୀଳା
ନିତ୍ୟ ନିତ୍ୟେ କରେ ସଙ୍କୀର୍ତ୍ତନ,
ପ୍ରତାପରୁଦ୍ର ରାଜନ    ରାମାନୁଜୀୟ ମନ୍ତ୍ର ଦାନ
ହରି ନାମ କରି ପ୍ରବର୍ତ୍ତନ ।
ଲକ୍ଷ ଲକ୍ଷ ଭକ୍ତ ତାରି    ନୀଳାଚଳେ ଲୀଳା କରି
ଶ୍ରୀମନ୍ଦିରେ କରେ ସଂକୀର୍ତ୍ତନ,
ଶ୍ରୀ ପ୍ରତାପ ପାପ ତାପ    ନାଶନେ ଷଡ଼ଭୁଜ ରୂପ
ହେଲ ପ୍ରଭୁ ଶ୍ରୀ ଶଚୀ ନନ୍ଦନ ।

ଦ୍ୱିଭୁଜରେ ଧନୁଶର　　　　ଦ୍ୱିଭୁଜେ ମୁରଲୀଧର
ଦଣ୍ଡ କମଣ୍ଡଳଧାରୀ ଗୌର
ନୀଳକୃଷ୍ଣ ସ୍ୱର୍ଣ୍ଣକାନ୍ତ　　　　ରାମକୃଷ୍ଣ ଗୌରକାନ୍ତ
ଶ୍ରୀକୃଷ୍ଣ ମୁରଲୀଧର　　　　ଦଣ୍ଡ କମଣ୍ଡଳୁ ଗୌର
ନୀଳକୃଷ୍ଣ ସ୍ୱର୍ଣ୍ଣାଭ ସୁନ୍ଦର,
ଷଡ଼ଭୁଜ, ରୂପ ଦର୍ଶନରେ ମହାରାଜ,
ଭକ୍ତିରେ କଲେ ପ୍ରଣତି　　　　ଶ୍ରୀପ୍ରତାପ ଗଜପତି,
ଷଡ଼ ଭୁଜେ ଦେଖି ଷଡ଼ୈଶ୍ୱର୍ଯ୍ୟ ।

---

ଓଁ ନମଃ ଶିବାୟ

## ଶ୍ରୀ ଲିଙ୍ଗରାଜଦେବ ବନ୍ଦନା

ଶ୍ଳୋକ

ହର ବିଶ୍ୱାଖିଳାଧାର ନିରାଧାର ନିରାଶ୍ରୟଃ,
ଦୁଷ୍ଟ ଗ୍ରସ୍ତ ମହଂ ଶମ୍ଭୋ ତ୍ରାହିଣା ପରମେଶ୍ୱରଂ ।

ଗୀତ—

ଜୟଦେବ ଲିଙ୍ଗରାଜ, ଯେନ ଧାନ ଅରଜ
ବିରାଜ ରାଜ ବିଶ୍ୱଧ୍ୱଜ ବିରାଜ, ହରିହର ମୂର୍ତ୍ତି ଏକାମ୍ରରାଜ । ପଦ ।
ଦେବ ଦେବରାଜ ମନୁଜ ତନୁଜ ସେବା ସଦାଶିବ ପଦସରୋଜ,
ଗିରିଜା ଜେମା ବଦନାବ୍ଜ ସୂର୍ଯ୍ୟ ମନସିଜ ପର କୈଳାସରାଜ । ୧
ଭବମୋହ ବ୍ୟାଜ ସିନ୍ଧୁରେ ନିମଜ ଜନ ତରେ ଭଜି ପଦସରୋଜ,
ସ୍ୱର୍ଗ ଗିରିରାଜ ଭଜନେ ଐଶ୍ୱର୍ଯ୍ୟ ପ୍ରାପତେ ତରନ୍ତି ଭକ୍ତ ସମାଜ । ୨
ତ୍ରିନେତ୍ର ତ୍ରିଶୂଳ କର ନୀଳଗଳ ଶୋଭେ ବ୍ୟାଳମାଳ ସୁବକ୍ଷସ୍ଥଳ,
ଅର୍ଦ୍ଧଚନ୍ଦ୍ର ମୌଳି ଜୁଟେ ଗଙ୍ଗାଜଳ ଅନଳ ନେତ୍ରେ ଜାଳ ଦୁଃଖ ଜାଳ ।
ଦେବ କୃତ୍ତିବାସ ବଧି କୃତ୍ତିବାସ ଈଶ ଏକାମ୍ର କ୍ଷେତ୍ରରେ କୈଳାସ,
ପାର୍ଶ୍ୱେ ଈଶାନୀ ଗଣେଶ ଷଡ଼ାସ୍ୟ ଗୋପାଳୁଣୀ ସହ ବାସ ମହେଶ । ୪

—※—

ସମାପ୍ତ

# ସୁନ୍ଦରୀ ଚଉତିଶା

## ରାଗ—ଚିନ୍ତା ଦେଶାକ୍ଷା

କମଳ ନୟନ ରଘୁମଣି
ସୀତା ସୀତା ସ୍ମୃ ସ୍ମୁରି ଗୁଣି
କରନ୍ତି ରୋଦନ-ଆହା ପ୍ରାଣ ଧନ
କେଣେ ଗଲୁ କୁରଙ୍ଗି ନୟନୀରେ ସୁନ୍ଦରୀ ।୧

ଖଣ୍ଡି ତପ ବଳେ ତେଜି ବାସ
ବନ୍ଧୁ ବାନ୍ଧବ ଏ ବନ ବାସ
ବାସର ରଜନୀ ନ ସରଇ ମୋର
ସ୍ମରି ସ୍ମରି ତୋ ଗୁଣ ପାରସ ରେ ସୁନ୍ଦରୀ ।୨

ଗଜ ଗତି ମୋ ଜୀବ ଜୀବନ
ତୋର ବିନୁ ଭୁବନ ମୋ ବନ
ମଣେ ଏବେ ତୋର—ବିହୁନେ କପଣ
ବନରେ ନେଉ ମୁଁ ଦିନରେ ସୁନ୍ଦରୀ ।୩

ଘନସାର ତୁ ମୋ ଗ୍ରୀଷ୍ମର
କୃଷ୍ଣସାର ନେତ୍ରୀ ତୋ ଅନ୍ତର
ହେଲା ବିନୁ ବିଷ-ସ୍ୱା ବିଷ ଅସାର
କେମନ୍ତେ ବଞ୍ଚିବି ଘୋର ସଂସାର ରେ ସୁନ୍ଦରୀ ।୪

ନୁହେଁ ବଡ଼ ହୋଇବା ନୃପତି
କି ଅବା ବଡ଼ ଇନ୍ଦ୍ର ସମ୍ପତ୍ତି
ପାଣ୍ଡବ ଦମ୍ପତି ଦ୍ରୌପଦୀ ଯେସନ
ମାନ ନ ଥିଲେ ବିପତ୍ତି ରେ ସୁନ୍ଦରୀ ।୫

ଚଞ୍ଚଳା ଯେସନ ମଧୁସୂଦନ
ଗଉରୀ ଶିବ ହରନ୍ତି ଦନ
ଏଣୁ ଜାଣ ନାରୀ ରତନ ପ୍ରଧାନ
ଗଙ୍ଗା ସାଗର ଯେହ୍ନେ ମିଳନ ରେ ସୁନ୍ଦରୀ ।୬

ଛେଦ ଯଶ ବଚ୍ଛେଦରୁ ଭଲ
ଝମ୍ପ କଲ କେତେ କଲବଲ
ଦଶବନ କ ଜଣି ଦନ ତୋ ଭିନ୍ନ
ପ୍ରାଣ ନେଲ ଏବେ ମୋର ମାରରେ ସୁନ୍ଦରୀ ।୬

ଗିବ ଜାବ ନେଇଁ ଲଗି ଜିବ
ଜୀବଧନ ପୁରଖୁ ମୋ ଗିବ
ଅଧର ପାନ ସୁଖ ବନ୍ଧୁ ଚେଜୁଛୁ
ଧର ପାନ ବୋଲି କେ ଯାଚବ ରେ ସୁନ୍ଦରୀ ।୮

ଟଙ୍କ ଧ୍ୱନିରେ ତୀକ୍ଷ୍ଣ ବାଣ
ବାନ୍ଧି ମଦନ ନେଉଛୁ ପ୍ରାଣ
ଚନ୍ଦ୍ର ଚନ୍ଦନାଦ ଅଗ୍ନି ସମେ ମୋର
ପ୍ରାଣ କରୁଛୁ ଶୋଷଣ ରେ ସୁନ୍ଦରୀ ।୯

ମରକତ ନେଣିକ ଧ୍ୱରଇ
ଅଟର ହେଲ ଏବେ କମାଇଁ
ସୁମନା ମନ-ମନାଇ ଓଷ୍ଠ ସୁଧା
ଯାନେ କିବ ଯାନ୍ତୁ ନାହିଁ ରେ ସୁନ୍ଦରୀ ।୧୦

ଟଳାବ ଦେଖି ମୁନଙ୍କ ଚିତ୍ତ
ତୁ ମୋ ଜୀବନ ଭଣ୍ଡାର ବିତ୍ତ
ବିଧି ନାମ ବନ୍ଧୁ ଏଡ଼ିକ ଅବଧି
କଲ ପୋଡୁ ପୋଡୁ ତା ମସ୍ତକ ରେ ସୁନ୍ଦରୀ ।୧୧

ଠିକେ ଠକ ଶଠାକ ଆଚରି
ଠକ ଗଲ ମୋତେ କୃଶୋଦରୀ
ଛୁଇ ସମାନ ସେବଇ ପ୍ରତିଦନ
ଛୁର ଜୀବ ରହିଛୁ କପଣ ରେ ସୁନ୍ଦରୀ ।୧୨

ଡରେ ଶୁଣେ ଘନ ଗରଜନ
ଘନ କେ ମୋ ଜୀବ ଜୀବନ
ଭୁବନ ମୋହିନୀ-ତୋପରି ସୁମନା
ବର ନାହିଁ ତ୍ରୀଭୁବନ ରେ ସୁନ୍ଦରୀ ।୧୩

ତୋଳ ବିଷ ଯାଇଥାନ୍ତା ଜଳ
ରହି ଥାଇନ୍ତ ସୁଖ ଭୁଂଜନ୍ତ
ଦାନବ ମାନବ-ଦେବ ନାଗ ନର
ନାଗଣକ ସର ହେବ ରେ ସୁନ୍ଦରୀ ।୧୪

ଅପସରୀ ବା ହେବେ କପର
ବୃନ୍ଦ ଦେଖିଛୁ କେତେ ସୁନ୍ଦରୀ
ତୋ ଯୋଷା ଚରଣ-ପ.ଷାଣକୁ
ତୁଳନାରେ କେହି ନ ଯିବେ ସର ରେ ସୁନ୍ଦରୀ

ତରୁଣୀର ତୃମ୍ବୀ ପସ୍ତକୁଚ
ବଣା କରିବାକୁ ଧାତା ପାଞ୍ଚ
କର ତାର ଦଣ୍ଡ-ସାର ଖୋଜ ଅବା
ନ ପାଇଲା ସ୍ୱର୍ଗ ମଞ୍ଚରେ ସୁନ୍ଦରୀ ।୧୬

ଅସ୍ତୁ ହେବେ କେ ଅବା ନାଗର
ଶୁଣି ରତ ନାମେ ଦ୍ୱି ଅକ୍ଷର
ବକ୍ଷ୍ର ଉସ୍ତରେ ନଜ ବନ୍ଧନ
ନାମେ ଦେଲ୍ଲ ପଞ୍ଚଶର ରେ ସୁନ୍ଦରୀ ।୧୭

ଉର୍ବୀ ନାରୀ ଯା ପାଶରେ ଥାଇ
ଜୀବ ତେଜନ୍ତୁ ତା ମୁଖ ଚାହିଁ
ତା ସମ ଧରଣୀ ମଧ୍ୟରେ ସୁକୃତ
ବନ୍ତ ଥିବ ଅବା କାହିଁରେ ସୁନ୍ଦରୀ ।୧୮

ଧନ୍ୟ ମୋହିନୀ ଅଧରେ ମଧୁ
ଠାରୁ ବଳ କବା ସୁଧା ସ୍ୱାଦୁ
ସିନ୍ଧୁ ମନ୍ଥନରେ ନ ହେଜଣ ଦେବ
ସୁରେ କ ପାଇଲେ ଦ୍ୱନ୍ଦ୍ୱରେ ସୁନ୍ଦରୀ ।୧୯

ମାନବତୀ ଯେନ ମୋ ଶନତୀ
ହସି କହିଲେ ପଦେ ଭାରତୀ
ସେ ସୁଟରୁ ବଡ଼ ହେବ ଅବା କାହିଁ
ଅଷ୍ଟ ନଧିର ପ୍ରାପତ ରେ ସୁନ୍ଦରୀ ।୨୦

ପର ଭୃତ ବଚନ ଯାହାର
ପାଶୁ ଅନ୍ତରରେ ବରଷ୍ଟର
ଜିବ ଥାଉ ମୃତ୍ୟୁ ବିହିଲ ବିଧାତା
କର୍ମ କବଳରୁ ତାର ରେ ସୁନ୍ଦରୀ ।୨୧

ଫଣୀ ମଣି ହରା ପରି ହେଲି
ଫାନ୍ଦେ ପଡ଼ି ଜୀବନ ହାରିଲି
ଜିବ ନଜା ନେଈ ଖାବ ଖାବ ଏବେ
ବିରହାନଳେ ପଡ଼ିଲି ରେ ସୁନ୍ଦରୀ ।୨୨

ବନ୍ଧୁ ବିହଙ୍ଗ ପକ୍ଷ ବିହଲେ
କେହୁ ଅବା ତୋ ବାରତା ଦେଲେ
ଖିଷଣ ପର୍ବତ-ସମୁଦ୍ର ବକ୍ଷରୁ
ପାରି ହୁଅନ୍ତ ମୁଁ ଭଲେ ରେ ସୁନ୍ଦରୀ ।୨୩

ଭଲ କରମରେ ମୋର ଥିଲା
ମନ୍ଦ ବିହି ଛନ୍ଦ ବସିଲା ।
ବୃକ୍ଷି ନଦୀ ତଟ ଚହ୍ଣାନ୍ତେ ମୋର
ଜୀବନ ଅସ୍ଥିର କଲା ରେ ସୁନ୍ଦରୀ ।୨୪

ମନ୍ତ୍ର ପରି ଜପୁଛି ତୋ ନାମ
କେବେ ମିଳିବ ତୋ ସଙ୍ଗେ ଧନ
ଚନ୍ଦ୍ର ଚକୋର ଘେନେ ସ୍ନେହ ପରି
ନ ପୂରୁଛି ମନସ୍କାମ ରେ ସୁନ୍ଦରୀ ।୨୫

ଯେବେଠି ଅନାଇଲେ ଇନ୍ଦ୍ର ଜାଲ
ଦିଶି ଯାଉ ଭରେ ଜଳବଳ
ସ୍ୱପନ ସମ୍ପତ୍ତି ପରାସ୍ତେ ଯୁବତୀ
ରତନ ହେଲୁ ଅନ୍ତର ରେ ସୁନ୍ଦରୀ ।୨୬

ରୁଷ୍ଟ ଦଶା ପ୍ରାପ୍ତ ହେଲା ମୋର
ସୁଧା ପାନ ପର ଛେଦ ଶିର
ନିକୁର ବନ୍ଧୁ-ପରାସ୍ତେ ଦଶି ପାଶେ
ନ ଅସି ଟୋଳୁଛୁ ଗାଲ ରେ ସୁନ୍ଦରୀ ।୨୭

ଲାବଣ୍ୟ ନିଧି ମୋର ଜୀବନ
ତୋର ବିନୁ ନ ଜାଣଇ ଆନ
ପଣତ୍ୟାଗ କଲୁ କଣା ସେବକକୁ
ସ୍ନେହେ ପ୍ରଭାତ ବଦନ ରେ ସୁନ୍ଦରୀ ।୨୮

ବୃଦ୍ଧି କଲାରେ ଜୀବନ ତୃଷା
କର୍ଣ୍ଣ ଧାର ଶବଦ ରେ ଗୋରୀ
ଯାସେ ତତାପେ କମଳ ଲହରୀ
କବଳୁ ଯିବ କି ଉଦ୍ଧରି ରେ ସୁନ୍ଦରୀ ।୨୯

ଶ୍ରେଷ୍ଠ ନ ମଣି ତପସ୍ୟା ବ୍ରତ
ପ୍ରାପ୍ତେ ମନ୍ତ୍ର ଯୋଗୀ ଦୃଷ୍ଟ
ଜୀବନରେ ନାରୀ-ଧ୍ୟାନ ହୋଇ ବାସ
ବିପରୀତ କରେ ଗ୍ରାସ ରେ ସୁନ୍ଦରୀ ।୩୦

ସଡ଼ାନନ ତାଙ୍କ କୃପା ହେବ
ଯବେ ମୋର ସୁଭାଗ୍ୟ ଦର୍ଶିବ
ଚମ୍ପା ଗୋରୀ ତାହୁ–ଚମ୍ପକ ମାଳା ମୋ
ଗଳାରେ ଶୋଭା ଦର୍ଶିବ ରେ ସୁନ୍ଦରୀ ।୩୧

ସୀତା ସୁମୁଖି ଅଭାବେ ମନ
ବ୍ୟାକୁଳିତ ହୋଇ ଆନ ଆନ
ବୃକ୍ଷରେ ଲତାରେ ପତରେ କାତରେ
କହନ୍ତି ରଘୁନନ୍ଦନ ରେ ସୁନ୍ଦରୀ ।୩୨

ହରି ହରିବେ ଯତେ ଦୁର୍ଗତି
ଆସି ପ୍ରିୟା ରଚିବ ଭାରତୀ
ସୁରତି ଦାମ୍ପତ୍ୟ—ଭାବେ ଚନ୍ଦ୍ର ପାଇ
ମଦନେ ହେବି କରତି ରେ ସୁନ୍ଦରୀ ।୩୩

କ୍ଷମା ସାଗର ପ୍ରଭୁ ଶ୍ରୀଧର
ପ୍ରିୟା ପାଣିରୁ ନେଇ ଅନ୍ତର
ମଲ୍ଲି ପଡ଼ା ଗଡ଼ ଅଧିପତି କହେ
ବିରହ କଷ୍ଟ ଅପାର ରେ ସୁନ୍ଦରୀ ।୩୪



## (କୃଷ୍ଣ ହେ ଦଅ କୃପା ବରଷି ବୃତ୍ତେ)

କହ୍ନାଇଁ ଧନ ଗଲ, ଆଉ ବଞ୍ଚିବେ ନାହିଁ
ଧରା ପରେ ଧରା, ମଣ୍ଡନା ଅଧରା
ହୋଇ ନାରୀ ସାରା, ଅଛନ୍ତି ଶୋଇ । ପଦ ।
ମନିବନ୍ଧୁ ନାଡ଼ି ଯାଉଅଛୁ ଛାଡ଼ି
ରହୁଅଛୁ ଗ୍ରୀଡ଼ି ଅଚେତା ହୋଇ
ସେଜ ସରୋଜ-ବଦନନ ସେଜ
ବରଜ ହେବାରୁ ଆସିଲି ଧାଇଁ ।।
ଆଉ ଉପାୟ ନାହିଁ, ସେ ଚନ୍ଦ ମୁହିଁ, ବାଉଳି ହୋଇ
ତୁମ୍ଭ ପ୍ରେମ ଫାନ୍ଦେ ପଶିଣ ଯାଇ ହେ ।୧।

ସେ ସଖି ସମାନ କରିଲସ୍ତୁ ହେବ
ରଥ ରଥ ପରେ ଅଛନ୍ତି ଶୋଇ
ସେ ପ୍ରାଣ ଧନଙ୍କ ଚନ୍ଦ୍ର ବଦନଙ୍କ
ଦେଖି ଆକୁଳିତ ହୁଅନ୍ତି ହନ୍ତ
ନରଣ ହୋଇ, ଡକା ପକାଇ, କହିଲେ ସାଙ୍କୁ
ଆଣ ସଖି ବେଗେ ପ୍ରାଣ ମାଧୋଇ ହେ ।୨।
ନ ଶୁଣେ ବଚନ ଶ୍ୱାସ ଘନ ଘନ
ଘନଶ୍ୟାମ ବୋଲି ବାଉଳା ହୋଇ
ହେ ମୁରଳି ଫୁଙ୍କା, ନାସାରେ ତୁଳିକା
ବେଳେ ବେଳେ ବେଳେ ଚେତା ଆସଇ
ବନ୍ଧୁ ଦେଖି ଏ ଦଶା, ଉଡ଼ୁଛି ହଂସା, ନ ଆସେ ଲଜ୍ଜା
ଆଶା ଏକା ତୁମ୍ଭେ ଆଉକେ ନାହିଁ ହେ ।୩।

ତୁମ୍ଭ ପ୍ରୀତି ବଣ ଗୋଲା ଜାତ ହୋଇ
ଛୁଟ ପରେ ତାର ଲଟି ଅଛଇ
ସହୁ କେତେ ବାଧା, ତୁମ୍ଭ ପ୍ରାଣ ରାଧା
ଯାଉଅଛି ଆଜୁ ବଦାସ୍ତୁ ହେଇ
ସେତ ଆମ୍ଭର ଧନ, ଆମ୍ଭ ଜୀବନ, ଅନ୍ଧ ନୟନ
ଛଡ଼ାଇ ନେଉଛି ଦାରୁଣ ବନ୍ଧୁ ହେ ।୪।

ଦେଖିଲେ ଯା ଆଖି, ରହୁ ପ୍ରାଣ ପକ୍ଷୀ
ଚନ୍ଦ୍ର ମୁଖି ଯଶା ଉଡ଼ି ନ ଯାଇ
ଏବେ କଏ ଆମ୍ଭ ମନ ଜାଣି ହେ ମୋହନ
ରଖାଇବ ଆଉ ପାଶରେ ନେଇ
ବନ୍ଧୁ ଯାଣିଥା, ପିଚ୍ଛିରି ମଥା, ରହୁବ କଥା
କାଳେ କାଳେ ନନ୍ଦା ଘୋଷିବ ମନ୍ଦ ହେ ।୫।

ଶୁଣି ଲଳିତାର ଏ ଅଧିର ଗୀର
ଚଳିଲେ ନାଗର ପ୍ରଝର ହୋଇ
ଦେଖି ଶ୍ୟାମଚନ୍ଦ୍ର ଉଦେ ହେଲ ଚନ୍ଦ୍ର
ଦୁଃଖ ଅନ୍ଧକାର ଗଲ ପଳାଇ
ତୁଟିଲ ବାଧା, ଉଠିଲେ ରାଧା, ଦେଖି ଶରଧା
ସଖି କୁଳ ସଙ୍ଗ ଆନନ୍ଦ ହୋଇ ହେ ।୬।

ଆନନ୍ଦରେ ଆଳି, ରଚି ଫୁଲ ଦୋଳି
ରାଧା ବନମାଳି ଦେଲେ ବସାଇ
ଏ "ହରିଚନ୍ଦନ" ଯୁଗଳ ଚରଣ
ସଦା କରେ ଧ୍ୟାନ ଆକୁଳ ହୋଇ
ଗୁଣ ବଖାଣ, ପଦ ସେବନ୍ତ, ନାମ ଜପିବ
ନିରନ୍ତରେ ବ୍ରଜ ଦାଣ୍ଡରେ ରହିବି ହେ ।୭।

## ଆତ୍ମବୋଧ ଚଉତିଶା

### ରାଗ—କଳହଂସ କେଦାର

କମଳା ଷଣ୍ଢ ପଦେ ମନ ତୁ ରଖି
କାହିଁକି ମନ ନିଜେ ହେଉଛୁ ଦୁଃଖିରେ
କାରଣ ବନ୍ଧ ମୋକ୍ଷ ତୋହର ଯେଣୁ
କାଳେ ଭୋଗ ସଂସାରେ କରନ୍ତି ପ୍ରାଣୀ ।୧

ଖୁସି ଲାଗିଛୁ ତୋତେ ଦେଖି ଏ ଧନ୍ଦା
ଖଗେଶପଣ୍ଡ ପାଦେ ନ ହେଲୁ ବନ୍ଦା ରେ
ଖସିଲେ ଗୋଡ଼ ତୋର ଧନ ସମ୍ପଦ
ନେଲେ କୌତୁକ ସବୁ ଭସାଇ ନେବ ରେ ।୨

ଗେଲ ଲଗିଛୁ ତୋତେ ନ ଭଜୁ ହଙ୍ଗ
ଗଲେଣି ଭବ ରଙ୍ଗମଞ୍ଚୁ ଯେ ଫେର ବେ
ଗଲ୍ପ ବେଳେ କେ କେତେ ନେଇଛୁ ଧନ
ଗରବ ଦମ୍ଭ ଦନେ ହୋଇବ ମ୍ଲାନ ।୩।

ଘର ଘରଣୀ ତୋର କରିବ ପର
ଘଟ ଦହନେ ଦନେ ନେବେ ସତ୍ୱର ରେ
ଘନେ ବିଜୁଳି ସମ ସବୁ ଅସ୍ଥିର
ଘନ ଶ୍ୟାମଳ ପଦେ ହୁଅ କିଙ୍କର ରେ ।୪।

ଆସିଲୁ ମାତା ଗର୍ଭୁ ସତ୍ୟ କରିଣ
ଅଣବିଶ୍ୱାସି ହେଲୁ ଭ୍ରମେ ପଡ଼ିଣ ରେ
ଅକାରଣେ ବୋଲୁଛୁ ସବୁ ମୋହର
ଅଚେତା ବେଳେ କେହୁ ନ ଯିବେ ଫେର ବେ ।୫।

ଚିହ୍ନୁଁ ଚିହ୍ନୁଁ ଚଞ୍ଚଳ ସରେ ଆୟୁଷ
ଚେତା ଘଟରେ ଆହ୍ନ ନାମକୁ ଘୋଷ ରେ
ଚତ ଦରକୁ ଚିହ୍ନୁଁ ନାହୁଁଟି ବାଟ
ଚରମେ ଯେଣେ ଯିବୁ ସମନ ଘଟ ରେ ।୬।

ଛାର ତୋ ମାଟି ଘଟ ମିଳାଇ ଯିବ
ଛ ଖଣ୍ଡ କାଠ ଶେଷେ ଲୋଡ଼ା ହୋଇବ
ଛନ୍ଦ କେଜାଣେ ଛନ୍ଦା ପଡୁରେ ଜୀବ
ଛାଡ଼ିଲେ ମାୟା ଯିବ ଏ ଭବ ରୋଗ ରେ ।୭।

ଜନ୍ମ ପଥ କବଳୁ ହୋଇ ନିସ୍ତାର
ଜଗତେ ଜଣେ କେବା ଅଛୁ ଅମର
ଜର ଘୋଟିଲେ ସବୁ ସୁଖ ସରିବ
ଜନକ ସୁତା ପତି ପଦୁରେ ଭଜ ରେ ।୮।

ଝଗଡ଼ା କରୁ ଭାଇ କୁଟୁମ୍ବ ମେଳେ
ଝୁରି ମରୁଛୁ ନିତି ସମ୍ପଦ ଲୋଭେ
ଝାମିଟେ କାଳ ତୋର ଗ୍ରାସିବ ଟାଣେ
ଝଟତି ଧାଅ ମନ ରାମ ଚରଣ ରେ ।୯।

ଅଜଣା ଜାଣି ଶୁଣି ହେଉଛୁ ଦ୍ୱନ୍ଦ
ଅବହେଳା କରିଲେ ନିସ୍ତାର ନାହିଁ
ଅକାରଣ କାମିନୀ କାଞ୍ଚନ ଧନ
ଅଣସ୍ୱପ୍ନ ବନ୍ଧୁଲେ ବୃଥା ଏ ମାନ ରେ ।୧୦।

ଟାଣ ଖର୍ଚ୍ଚିବ ଦିନେ ତୋ ଯମ ଖଣ୍ଡ
ଟାଳ୍ପ ନ ମଣି ଚେନ୍ତୁ ନାମକୁ ରଟ ରେ
ଟାଙ୍କି ବସିଛୁ କାଳ ପକାଇ ଫାଶ
ଟିକଏ ହେଳା କଲେ ହୋଇବୁ ନାଶ ରେ ।୧୧।

ଠକରେ ନ ପଡ଼ ରୁ ଠାକୁର ଭଜ
ଠାବ ମିଳିବ ଯେବେ ତେଜ ଏ ବ୍ୟାଜ ରେ
ଠିକେ କହୁଛୁ ମନ କେ ନୁହେଁ କାର
ଠକବେ ଦାଗ୍ ବନ୍ଧୁ ସୁତ ତୋହର ରେ ।୧୨।

ଡିଣ୍ଡିମ ବାଜୁଅଛୁ ଯା ନାମେ ନଶ୍ୱ
ଡର ତେଜିଣ ରଖ ତା ପାଦେ ମତି ରେ
ଡୋଳା ବୁଜିଲେ ଭେଳା ଯିବଟି ବୁଡ଼ି
ଡାକ ନ ଶୁଣି ଯିବୁ ମାଟିରେ ପଡି ରେ ।୧୩।

ଢମ ସ୍ୱତର ତୋର ହୋଇବ ମ୍ଳାନ
ଢାଳେ ହେଁ ଖର୍ଚ୍ଚି ଯିବ ସବୁ ଗୁମାନ
ଢଳୁଛୁ ପଦ୍ମ ପତ୍ରେ ଯେସନେ ନୀର
ଢଳି ପଡ଼ିଲେ ସବୁ ହେବ ଅସାର ରେ ।୧୪।

ଅନୁକ୍ଷଣେ ଯେ ବଳାଉଛୁ ତୁ ମତି
ଅତି କଷ୍ଟେ ଅର୍ଜ୍ଜିଛୁ ଯେଣେ ବିଭୂତି
ଅଲଗା ହୋଇ ସର୍ବେ ରହିବେ ଦିନେ
ଅଣ ଆଦୃତ ହେବୁ ଯମ ଭୁବନେ ରେ ।୧୫।

ତ୍ରିତାପ ସଙ୍କୁଳିତ ଭବ ସାଗର
ତରଙ୍ଗ ତରିବାକୁ ତତ୍ତ୍ୱ ତୁ ଧର
ତରେ ତର ତରକ ଜପିବୁ ନାମ ରେ
ଥାନ୍ତୁ ଲଭିବୁ କିସ କରିବ ଯମ ରେ ।୧୬।

ଥକା ହୋଇଲେ ବଳେ ତୋ ପଦ ହସ୍ତ
ଥର ଥର ହୋଇଣ ଚଳିବୁ ପଥରେ
ଏବେ ଅଲଗା ହୋଇ ତୋ ପ୍ରିୟ ଜନ
ଥୋକାଏ ନ ଶୁଣିବେ ତୋର ବଚନ ରେ ।୧୭।

ଦରବ ଅରଜିଣ ଗରବ କର
ଦେହ ଭିତରେ ଦେଖ କ ନାରଖାର ରେ
ଦନାର୍ତ୍ତି ହର ପଦେ କର ଗୃହଣ
ଦନେ ସେ ଘୁଞ୍ଚାଇବେ ଏ ଭବବାଣ ରେ ।୧୮।

ଧକା ମାରିବ କାଳେ ବାନ୍ଧିଣ ଡୋର
ଧମକାଉଣ ଥିବେ ଯମ ଡଗର ରେ
ଧକାଇ ନରକରେ ନ ବୁଡ଼ ମର
ଧନ୍ଦା ତେଜିଣ ଫନ୍ଦା କର ଶ୍ରୀହରି ରେ ।୧୯।

ନୁହେଁ କେହୁ କାହାର ସବୁଟି ମିଛ
ନ ଯିବେ ଜଣେ କେହୁ ଗଲେ ପଛ ରେ
ନିଦ୍ରାରେ ସ୍ୱପ୍ନ ଯେହ୍ନେ ଦେଖୁଛୁ ମନ
ନ ରହିବ ତେସନେ ଧନ ଯୌବନ ରେ ।୨୦।

ପୁତ୍ର କଳତ୍ର ମିତ୍ର ପଦାର୍ଥ ଯେତେ
ପରତେ ନଯା ପ୍ରମାଦ ଏ ସମସ୍ତେ ରେ
ପଡ଼ିଛୁ ମାୟା ଜାଲେ ଆବଦ୍ଧ ହୋଇ
ପଡ଼ନ୍ତା କାଳେ ରକ୍ଷାକର୍ତ୍ତା ମାଧୋଇ ରେ ।୨୧।

ଫକୀର ହେବେ କାଲି ଆଜି ଯେ ରଜା
ଫିକର ଛାଡ଼ି ନାମେ ମନକୁ ମଜା ରେ
ଫୋଟକା ଫାଟି ଯେବେ ମିଶେ ଜଳର
ଫାନ୍ଦୁ ଫସିଲେ ଯିବ ଏ ଦେହ ଛାର ରେ ।୨୨।

ବୁଲିଲେ ତୀର୍ଥ ବ୍ରତ କି ଫଳ ହେବ
ବଡ ମାଳି ଲଗାଇ କି ବନ ସଜବ ରେ
ବିଶ୍ୱନାଥଙ୍କୁ ଏକା ମନରେ ରଖି
ବଶ ପ୍ରପଞ୍ଚ ପାଇଁ ବଅ ଉପେକ୍ଷୀ ରେ ।୨୩।

ଭୂଗ ଭବ ଯାତନା ଭାର ନ ସହ
ଭୂମେ ଜନ୍ମି ପ୍ରଭୁରେ ନ ହୁଅ ଦ୍ରୋହୀ ରେ
ଭକ୍ତ ଭାବରେ ବଶ ସେ ଭବଗ୍ରାହୀ
ଭାଗ୍ୟେ ଥିଲେ ଭବରୁ ହୋଇବୁ ଥାହ ରେ ।୨୪

ମାନବ ଦେହ ଆଉ ପାଇବୁ ନାହିଁ
ମାନ ମହତ୍ୱ ତେଜି ଭଜ ମାଧୋଇ ରେ
ମନ ମନ-ମଥକୁ କଲେ ଆବୃତ
ମିଳବ ତୋତେ ହେଲେ ସେ ରାଧାକାନ୍ତ ରେ ।୨୫

ଜମ ଶ୍ରୀକାନ୍ତ କୀର୍ତ୍ତି ଧୃତ କ୍ଷଣିକ
ଯାତନାମୟ ଦେହ ସ୍ଥିର ନ ରଖ ରେ
ଯମ ଦଣ୍ଡରୁ ଯେବେ ଯିବୁ ତରନ୍ତ
ଯଶୋଦା ସୁତେ ବଳା ବଳାଅ ମତ ରେ ।୨୬

ରୌରବ ମୁଖୁ ଯେବେ ହୋଇବୁ ପାର
ରକ୍ଷା ବାଟକୁ ଦେଲୁ ଖୋଜ ପାମର ରେ
ରାମ ନାମଟି ସତ୍ୟ ସଂସାରେ ସାର
ରଟ ତୁ ଦିନି ଦିନେ ହେବୁ ଅମର ରେ ।୨୭

ଲୀନ ହୋଇବା ପଥ ଖୋଜୁଛୁ ଧନ
ଲାଳସା ଦୂରେ ଏଡ଼ି କର ଭଜନ ରେ
ଲକ୍ଷେ ଯୋଜନୁ ଗଜ ଡାକିଲା ବେଳେ
ଲବଣୀ ଚୋର ତାକୁ ତାରିଲେ ହେଲେ ରେ ।୨୮

ବିଧି ବିଧାନ କରୁ ତୁ ବନ୍ଦନା
ବଂଶେ କାର ଗରବ ନୋହୁଚି ଚୂନାରେ
ବନ୍ଧୁ ବାନ୍ଧବ ଅଳି ତୁଟିବ ଦିନେ
ବୁଝିଲେ ନେଇ ନ ଦେଖିବୁ ସ୍ୱପନ ରେ ।୨୯

ଶିର କେଶ ତୋ ପକ୍ୱ ହେଲଣି ଆସି
ଶିଘ୍ର ଚେତଣ ଦନ୍ତ ମୁଖୁ ତୋ ଖସି ରେ
ଶିବ ହୋଇବ ଯେବେ ଏ ନର ଦେହ
ଶ୍ରୀହ୍ୱା ସେବିତ ପଦେ ରଖ ରୁ ଲୟ ରେ ।୩୦

ଷଡ଼ ଅଙ୍କ ଯେବେ ପାଶବୁ ଜାତ
ଷଷ୍ଠ ଅଙ୍କ ତାପରୁ ବ୍ରେଶ୍ବ ମୂକତ ଗେ
ଷଡ଼ ଋତୁ ସଙ୍ଗେ ତୋ ତଣ ଅସ୍ମୃଷ
ଷଡ଼ ମୁଖ ତା ବନ୍ଧୁ ନାମକୁ ଘୋଷ ରେ ।୩୧

ହେହ୍ବର ପୁଷ ମୁଖେ ଅଗ୍ନି ତୋ ଦେଇ
ସାଶବ ପିଣ୍ଡ କାର୍ଯ୍ୟ ଶ୍ମଶାନେ ଯାଇ ରେ
ସୁନ୍ଦରୀ ନାରୀ ତୋର ରଙ୍ଗ ପକାଇ
ସୁବର୍ଣ୍ଣ ବାହୁ ହସ୍ତ ଦେବ ଖସାଇ ରେ ।୩୨

ହଜାନା ଛନ ମଜା ତେଜ ସୁବାହୁ
ହର ନ ଭଜି ସଜା ନ ଖୋଜ ଆହୁ ରେ
ହସ କୌତୁକ ଖେଳ ସବୁଟି ମିଛ
ହରଦ କାଳେ କାଲ ଜଗିଛୁ ପଛ ରେ ।୩୩

କ୍ଷମା ସାଗର ହର ଦଅ ଉତ୍ତର
କ୍ଷିତିରେ ଯଶ ନାମ ରହୁ ତୁମ୍ଭର ରେ
କ୍ଷମ ଏ ଦାସ ଦୋଷ କରୁଛୁ ସ୍ତୁତ
କ୍ଷିତିପତି ମଲପଡ଼ା ବନତି ରେ ।୩୪

---

## ରସ ପଞ୍ଚକ

ରମଣୀ ମଣି ମୋ ଗଲା ରଚନ ହାର
ରସିକବରରେ ଖୁଜୁଁ ମୁଁ ତୋ! ବୁଜର । ପଦ ।
ରସବନ୍ତୀ ନାରୀ ସାର ରସି ଆସ ଏମାବର
ରଞ୍ଜାଧର ହର କଷ୍ଟୁ ଉଦ୍ଧର ।୧।
ସଜ ସବେଜ ତୋ ହସ ସଖି ପଦେ ହସି ଗ୍ରାଷ
ସବୁ ଯାଉଛୁ ରେ ଗୋଷ୍ଠ ତୋ କଣା ଦାସ ।୨।
ପରତାପି ମାର ତାପ ପଶୁଣ ନେବ ସମୀପ
ପରଭୃତ ଭାଷି ପେଲଦଅ କୋପ ।୩।
ଚନ୍ଦ୍ରାନନ ମୁଁ ତୋ ନତ ଚତୁରୀ ତୋ ଉଚ କୁଚ
ଚନ୍ଦନ ଖେଦକ ହେବ ହସି ରୁ ବାଚ ।୪।
କରକଣ୍ଠୀ ତୋ ସେବକ କର ନାହିଁ କାଳ
କହେ ହରି ସେତୁଥିବ ପଦ ସବକ ।୫।

---

## ପଞ୍ଚମ ବରାଡ଼ି

ନମସ୍ତେ କମଳା ଗଳା    ମାଳା ବଳା ହୃଦ ଭଳା
ନୀଳାଚଳଧିପ ଚନ୍ଦ୍ରାଡ଼ୋଳା
ଢଳାଙ୍କେ ମୋଠାରେ ହେଲା    ଜଳେ ବୁଡ଼ିବ ମୋ ଭେଳା
ଖେଳା ବିନୋଦିଆ ନନ୍ଦବଳା

ହେ, ବଳାନୁଜ

ଗଳାମାଳା ହେଲ ଅଘମାଳା

ଭରିଅ ମୋତେ ସଂଖୋଳା    ଅହେ ଦଶରଥ ବଳା
ଚରଣ ଯୁଗଳେ ମନ ମିଳା—

———

## କାମୋଦୀ

ପାପଧନ କରଜା    ନ ହୋଇବାରୁ ଶୁଝା
ଥର ଥର ଥରୁଛୁ ମଜା
କୃପନ୍ତ ରଜା ଗୋଜା    ଲେଖୁଛୁ ଦେବ ସଜା
ହଜାଇ ଦେବ ମୋର ମଜା

ହେ, ଦେବରଜା

ହୃଦୟ କ୍ଷେତ୍ରୁ ପାପ ଗଜା

ଓପାଡ଼ି କର ମୋତେ ପ୍ରଜା

ଅଶା ହୋଇଲେ ତେଜା    ହୋଇବ ହିନା ଲଜ୍ୟା
ନାମେ ବାଜିବ ଜୟବାଜା    —।୧।—

———

# ଶବ୍ଦ-ଅର୍ଥ

ବେଦ୍ଧ୍ୱର—ବ୍ରହ୍ମା
ମାର—କନ୍ଦର୍ପ
ସତ୍ରଯୋନ—ଇନ୍ଦ୍ର
ସୁରେଶ୍ୱର—ବିଷ୍ଣୁ
ସୁନାଶିର—ଇନ୍ଦ୍ର
ପଦ୍ମକୁମର—ବ୍ରହ୍ମା
ସମ୍ବରପୁର—ଶିବାଳୟ
ଶୂଳପାଣି—ମହାଦେବ
ଇକ୍ଷଣୀ—ପାର୍ବତୀ
ଅପନପାଣି—ଶ୍ଳୋକ ଶୋଷ
ପାଣିଜନସ୍ତନା—ପଦ୍ମଲୋଚନା
ମେଷଭଣ—
ବଓପାରେ—ଶ୍ରେଷ୍ଠ ବର.
ନୀରଯାନନା—ପଦ୍ମମୁଖୀ
ସୂମରେ—ବରଷାରେ
ନିଦଶାନନ—ଦେବଭୂମି
ରଜନୀଈଶ—ଚନ୍ଦ୍ର
ଶୂଳି—ମହାଦେବ
ବାଲୀଶ—ନାଗଶ୍ରେଷ୍ଠ
ବାଳଶ—ମୂର୍ଖ
ଅଚଳ—ପର୍ବତ
କଶନ୍ଦ୍ର—ସିଂହ
ହରନ୍ଦ୍ର—ସିଂହ
ପଞ୍ଚାସ୍ୟ—ମହାଦେବ
ସଞ୍ଚ ପଞ୍ଚମୌଳି—ମହାଦେବ
ନଳନେଶ—ସୂର୍ଯ୍ୟ
ହିମକର—ଚନ୍ଦ୍ର
ଶିଖଣ୍ଡମଣ୍ଡନ—ମୟୂରପୁଚ୍ଛମଣ୍ଡିତ କୃଷ୍ଣ
ବ୍ୟାଳ—ସର୍ପ

ଜାତବେଦ—ଅଗ୍ନି
ଷଡ଼ାସ୍ୟ—କାର୍ତ୍ତିକ
ଆର୍ତ୍ତି—ଉତ୍ପାତୁର, ଦୁଃଖ
ପୁରନ୍ଦର—ଇନ୍ଦ୍ର
ଦ୍ୱିଜେନ୍ଦ୍ର—ବ୍ରାହ୍ମଣଶ୍ରେଷ୍ଠ
ଗିରିନ୍ଦ୍ର—ହିମାଳୟ
ଦ୍ୱିଜରାଜ - ଚନ୍ଦ୍ର, ବ୍ରାହ୍ମଣ, ଗରୁଡ଼
ଦ୍ୱିଜରାଜ-ରାଜ—ଶ୍ରୀକୃଷ୍ଣ
ମଧୂପର—ବିଷ୍ଣୁ
ହଳଭ୍ରା—ହଳଧର
ଶ୍ରୀଶ—ବିଷ୍ଣୁ
ଶ୍ରୀପତି—କୃଷ୍ଣ
ବ୍ରଶିଷ୍ୟ—ନାରଦ
ଇଶାନ—ପାର୍ବତୀ
ଦଣ୍ଡଧର—ଯମ
ରୁଦ୍ରଶିଷ୍ୟ—ନନ୍ଦୀ, ଭୃଙ୍ଗୀ
ଅହିଧର—ଶିବ
ବରହି—ମୟୂର
କ୍ରୌଞ୍ଚଦାର—କାର୍ତ୍ତିକ
ଚରସ୍ଥୁଳ—ଏକ୍ନ
ବକ୍ରତୁଣ୍ଡ—ଗଣେଶ
ଜ୍ୟୋତିଷ୍କ—ଚନ୍ଦ୍ର
ପଞ୍ଚକ—କାର୍ତ୍ତିକ ମାସ ଶେଷ ୫ ଦିନ
ତ୍ର୍ୟମ୍ବକ—ଶିବ
ବଧୂତୁନ—ବସ୍ତୁ
ଷାଣ୍ମାତୁର—କାର୍ତ୍ତିକେୟ
ଉଉଦଶା—ବତୃଷ୍ଣା, ଜରାବସ୍ଥା
କନକକାନ୍ତି—ସ୍ୱର୍ଣ୍ଣଦେହା
ନଗ—ପର୍ବତ

ହରି—ବିଷ୍ଣୁ, ଶିବ, ବ୍ରହ୍ମା, ଯମ, ସିଂହ, ବାନର
ଚରମେଶ—ଯମ
ଝେରପକ୍ଷୀ—ଗାଢ
ସାଗର ଝିଅ—ଲକ୍ଷ୍ମୀ
ଦଶାସ୍ୟ—ରାବଣ
ଫୁଲେଢବର—ନୀଳ କଣ୍ଠ
କମ୍ବୁଧର—ଶଙ୍ଖଧାରୀ
ଅମ୍ବୁଜାକ୍ଷ ପଦ୍ମ ଆକ୍ଷି
କମ୍ବୁକଣ୍ଠି—ଶଙ୍ଖପରି ରେଖା ସଂଯୁକ୍ତ କଣ୍ଠ
ତ୍ରିଦେବ—ବ୍ରହ୍ମା, ବିଷ୍ଣୁ, ଶିବ
ତ୍ରିଦିବ—ସ୍ଵର୍ଗ, ମର୍ତ୍ତ୍ୟ, ପାତାଳ
ସୂତ—ଯମ
ପଞ୍ଚାଳେଶ କେମା—ଦ୍ରୌପଦୀ
ଶତପତ୍ରନେତ୍ର—ବିଷ୍ଣୁ
ପଞ୍ଚାସ୍ୟ ପେ ଷା—ଶିବଙ୍କ ସ୍ତ୍ରୀ
ମାରୁର—ବେଲ
ଷଷ୍ଟର୍ଦ୍ଧି—ନଅ

ଦନୁଜ—ଅସୁର
ମଧୁପର—ମଧୁଦୈତ୍ୟ ଶତ୍ରୁ
ଅରି—ଶତ୍ରୁ-ଖଡ୍ଗ
ହେରମ୍ବ—ଗଣେଶ
ପୂର୍ଣ୍ଣଗ୍ରାସ—ପୂର୍ଣ୍ଣପରାଗ
କଷାବାସ—ଗେରୁବସ୍ତ୍ର
ପୌଲସ୍ତ୍ୟ ସରୋଜ—ପୌଲସ୍ତ୍ୟ ଋଷିଙ୍କ ବଂଶଧର ରାବଣ
ହଂସ ବୃଷପତି—ବ୍ରହ୍ମା ଶିବ
ଉଦନ୍ତ—ଖବର
ହାଟକ—ସୁନା
ଶ୍ରୀକ.ଟକ—ନଗରଶ୍ରେଷ୍ଠ
ପଟକ—କଟିବସ୍ତ୍ର
ବ.ରଜଚର—କୃଷ୍ଣ
ମଣିବକ୍ଷା—ମଣିମଣ୍ଡିତ ବକ୍ଷ
ଭୃଗୁସୁତ—ପରଶୁରାମ
ବନଚର—ବ୍ୟାଧ
ସ୍ମରାପର—କନ୍ଦର୍ପ

---

# ଶୁଦ୍ଧିପତ୍ର

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି |
|---|---|---|---|
| ନବତନ | ନବତଳ | ୫ | ୧୮ |
| ଯୋଡ଼ାକୁମୁମ ଗଡ଼ | ଯୋଡ଼ାକୁସୁମ | ୨ | ୩ |
| ଦୌପଦୀ | ଦ୍ରୌପଦୀ | ୨ | ୩ |
| ଶାପନ | ଶାପକ | ୪ | ୬ |
| ନନ୍ଦୀ | ନଳୀ | ୭ | ୩ |
| ଛଲେ | ଛିଲେ | ୭ | ୧୩ |
| ଫରେଷ୍ଟର | ଫରେଷ୍ଟରଙ୍କ | ୭ | ୧୪ |
| ଶାପକନ | ଗାମ | ୭ | ୧୮ |

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି |
|---|---|---|---|
| ଧସଇ | ଧସ | ଛ | ୫ |
| Ancident | Ancient | ଚ | ୧୪ |
| Sworo | Sword | ଚ | ୨୦ |
| ମଦ୍ବଷାମଣି | ମଦ୍ବମାମଣି | ଚ | ୧୪ |
| କ୍ଷାଇନଥା | କ୍ଷାରନଥା | ଛ | ୧୪ |
| ଡରେନ୍ଦ୍ର | ନରେନ୍ଦ୍ର | ଛ | ୨୨ |
| ଖିବଦ | ବରଦ | ଛ | ୨୩ |
| ଶ୍ରୀମନ୍ତ | — | ଝ | ୧୨ |
| ମୁଠିକାର | ମୂଠିବାର | ଝ | ୨୪ |
| ନକଲ | କବଲ | ଡ | ୧୪ |
| ଲମି | ଜମି | ଢ | ୧୮ |
| ଶିର୍ଷକାଳ | ଶୀର୍ଷସ୍ଥାନ | ଧ | ୧୯ |
| କପିଳେଶ୍ବରଦେବ | କପିଳେଶ୍ବର | ଫ | ୧୭ |
| ଯୁଦ୍ଧ ପାଇଁ | ଯୁଦ୍ଧକୁ ଯିବା ପାଇଁ | ୦ | ୩ |
| ନିପାଠି | ନିପାଠି ଖଇରପଡ଼ା | ଖ | ୧୧ |
| ଲକ୍ଷ ରକ୍ଷ | ଲକ୍ଷ ଲକ୍ଷ | ୧ | ୧୧ |
| ବ୍ୟଡତ | ବ୍ୟଥିତ | ୧୧ | ୧୭ |
| ସତପ | ସତତ | ୧୭ | ୧୭ |
| ବହନ | ବଦନ | ୨୧ | ୧୫ |
| ଜନବ | ଜାନବ | ୨୩ | ୯ |
| ବମା | ବାମା | " ୨ | ୪ |
| ଭଲ | ଭାଲ | ୪୮ | ୧୨ |
| ଚେବନ | ଗୋବନ | ୫୭ | ୧୨ |
| ଅଲ | ଆଲ | ୫୭ | ୧୮ |
| ସୁଜନ୍ୟ | ସୁଜାମେଣ୍ଟଂ | ୫୮ | ୪ |
| ପ୍ରଶସ୍ତ | ପ୍ରଶସ୍ତି | ୫୦ | ୧ |
| ଦୀନବନ୍ଧୁ | ଦୀନବନ୍ଧୁ | ୮୭ | ୧୪ |
| ଶତ | ଶତ୍ରୁ | ୮୭ | ୧୪ |

ସମାପ୍ତ